

ପରମ ଶ୍ରଦ୍ଧେୟ ଶ୍ରୀହନୁମାନ ପ୍ରସାଦ ପୋଦ୍ଦାର

(ଭାଇଜୀ )

(୧୭ ସେପ୍ଟେମ୍ବର ୧୮୯୨ – ୨୨ ମାର୍ଚ୍ଚ ୧୯୭୧ )

1186

।। ଶ୍ରୀହରିଃ ।।

# ଶ୍ରୀଭଗବନ୍ନାମ

श्रीभगवन्नाम ( ओड़िआ )



ଲେଖକ: ହନୁମାନପ୍ରସାଦ ପୋଦ୍ଦାର
ଓଡ଼ିଆ ଭାଷାନ୍ତର: ଶ୍ରୀବତ୍ସ କର ଶର୍ମା

*Books are also available at—*

1. Gita Press, Gorakhpur Ki Pustak-Dukan, Bharatiya Towers, Badam Badi, Cuttack © (0671) 2335481
2. Cuttack, Railway Station, Platform No.1
3. Bhubaneswar, Railway Station, Platform No.1
4. Howrah, Railway Station, Platform No. 18
5. Gobind Bhavan-Karyalaya,151, Mahatma Gandhi Road, Kolkata © (033) 40605293; Fax 22680251

Sixth Reprint 2017 2,000

Total 25,000

❖ **Price : ₹ 5**

**( Five Rupees only )**

Printed & Published by :

**Gita Press, Gorakhpur—273005 (INDIA)**

(a unit of Gobind Bhavan-Karyalaya, Kolkata)

Phone - (0551) 2334721, 2331250; Fax - (0551) 2336997

web : **gitapress.org** e-mail : **booksales@gitapress.org**

**Visit gitapressbookshop.in for online purchase of Gitapress publications.**

1186 Shri Bhagwannam (Odiya)_Section_1_Back

॥ ଶ୍ରୀହରିଃ ॥

# ଶ୍ରୀଭଗବନ୍ନାମ

**ପାପାନଳସ୍ୟ ଦୀପ୍ତସ୍ୟ ମା କୁର୍ବନ୍ତୁ ଭୟଂ ନରାଃ।**
**ଗୋବିନ୍ଦନାମମେଘୌଘୈର୍ନଶ୍ୟତେ ନିରବିନ୍ଦୁଭିଃ ॥**

(ଗରୁଡ ପୁରାଣ)

'ହେ ମନୁଷ୍ୟମାନେ ! ପ୍ରଦୀପ୍ତ ପାପାଗ୍ନିକୁ ଦେଖି ଭୟ କର ନାହିଁ । ଗୋବିନ୍ଦ ନାମ ରୂପକ ମେଘର ଜଳବିନ୍ଦୁ ଦ୍ୱାରା ଏହାର ନାଶ ହୋଇଯିବ ।'

ପାପମାନଙ୍କରୁ ମୁକ୍ତ ହୋଇ ପରମାତ୍ମାଙ୍କ ପରମ ପଦକୁ ପ୍ରାପ୍ତ କରିବା ନିମିତ୍ତ ଶାସ୍ତ୍ରମାନଙ୍କରେ ଅନେକ ଉପାୟ ବତାଇ ଦିଆଯାଇଅଛି । ଦୟାମୟ ମହର୍ଷିମାନେ ଦୁଃଖକାତର ଜୀବମାନଙ୍କର କଲ୍ୟାଣ ହେତୁ ବେଦମାନଙ୍କ ଆଧାରରେ ଅନେକ ପ୍ରକାରର ଏପରି ବିଧିମାନ ବତାଇଛନ୍ତି, ଯେଉଁଗୁଡ଼ିକର ଯଥାଧିକାର ଆଚରଣ କଲେ ଜୀବ ପାପମୁକ୍ତ ହୋଇ ସବୁଦିନ ପାଇଁ ନିରତିଶୟାନନ୍ଦ ପରମାତ୍ମସୁଖକୁ ଲାଭ କରିପାରେ । କିନ୍ତୁ ବର୍ତ୍ତମାନ କଳିକାଳ । ଜୀବନର ଅବଧି ବହୁତ କମ୍ । ମନୁଷ୍ୟର ଆୟୁ ଦିନକୁ ଦିନ କମିଯାଉଛି । ଆଧ୍ୟାତ୍ମିକ ,ଆଧିଭୌତିକ ଓ ଆଧିଦୈବିକ ତାପସମୂହ ବଢ଼ି ଚାଲୁଅଛି । ଭୋଗର ପ୍ରବଳ ଲାଳସା ପ୍ରାୟଃ ସମସ୍ତଙ୍କୁ ନିରୁପାୟ ଓ ଉନ୍ମତ୍ତ କରି ରଖିଛି । କାମନାର ଅଶେଷ କଳଙ୍କ ଦ୍ୱାରା ବୁଦ୍ଧି ଉପରେ କାଳିମା ଘୋଟି ଯାଇଛି । ପରିବାର, କୁଟୁମ୍ବ , ଜାତି ଅଥବା ଦେଶ ନାଁ ରେ ହେଉଥିବା ନାନା ପ୍ରକାରର ମୋହମୟ କ୍ରିୟାସମୂହର ତୀବ୍ର ଧାରା-ପ୍ରବାହରେ ଦୁନିଆ ଭାସୁଅଛି । ଦେଶ ଓ ଉନ୍ନତି ନାଁ ରେ ଧର୍ମ, ଅହିଂସା , ସତ୍ୟ ଓ ମନୁଷ୍ୟତ୍ୱ ପର୍ଯ୍ୟନ୍ତ ବିସର୍ଜନ କରାଯାଉଅଛି । ସାରା ଜଗତରେ କୁବାସନାପୂର୍ଣ୍ଣ କୁପ୍ରବୃତ୍ତିଗୁଡ଼ିକର ତାଣ୍ଡବ ନୃତ୍ୟ ହେଉଅଛି । ଶାସ୍ତ୍ରଗୁଡ଼ିକର କଥନାନୁସାରେ ଯୁଗପ୍ରଭାବରୁ ବା ଆମ ଦୁର୍ଭାଗ୍ୟଦୋଷରୁ ଧର୍ମର ଏକ ପାଦ ମଧ୍ୟ ବର୍ତ୍ତମାନ କେବଳ ନାମକୁମାତ୍ର ରହିଛି । ଆଜିକାଲିକାର ଜୀବମାନେ ଧର୍ମାନୁମୋଦିତ ସୁଖରେ ସୁଖୀ ହେବାକୁ ଚାହୁଁ ନାହାନ୍ତି ।

ସୁଖ ଚାହୁଁଛନ୍ତି - ଅଟଳ ,ଅଖଣ୍ଡ ଓ ଆତ୍ୟନ୍ତିକ ସୁଖ ଚାହୁଁଛନ୍ତି , କିନ୍ତୁ ସୁଖର ମୂଳଭିତ୍ତି ଧର୍ମର ସର୍ବନାଶ ନିମିତ୍ତ ସଂକଳ୍ପବଦ୍ଧ ହେଉଛନ୍ତି । ଏପରି ପରିସ୍ଥିତିରେ ସୁଖ - ସ୍ୱପ୍ନରେ ମଧ୍ୟ ଜଗତକୁ କେବଳ ନିରାଶ ହିଁ ରହିବାକୁ ପଡୁଛି । ଆମର ଏହି ଦୁର୍ଦ୍ଦଶାକୁ ମହାପୁରୁଷ ଓ ଭଗବତ୍ ଭକ୍ତମାନେ ପୂର୍ବରୁହିଁ ଜାଣି ନେଇ ଥିଲେ; ଏହାରି ଦ୍ୱାରା ସେମାନେ ଦୟାପରବଶ ହୋଇ ଆମ ପାଇଁ ଏପରି ଏକ ଉପାୟ ଦେଖାଇଲେ , ଯାହାକୁ ଇଚ୍ଛା କଲେ ସହଜରେ କାମରେ ଲଗା ଯାଇପାରେ । କିନ୍ତୁ ଯାହାର ସେହି ମହାନ୍ ଫଳ ହୁଏ ; ଯାହା ପୂର୍ବେ ବଡ଼-ବଡ଼ ଯଜ୍ଞ ,ତପ ଓ ଦାନ ଦ୍ୱାରା ମଧ୍ୟ ହେଉ ନ ଥିଲା ,ତାହା ହେଉଛି ଶ୍ରୀହରିଙ୍କ ନାମ ଜପ , କୀର୍ତ୍ତନ ଓ ସ୍ମରଣ । ବେଦାନ୍ତ ଦର୍ଶନର ନିର୍ମାତା ଭଗବାନ୍ ବ୍ୟାସଦେବଙ୍କ ରଚିତ ଭାଗବତରେ ଜ୍ଞାନିଶ୍ରେଷ୍ଠ ଶୁକଦେବ ମହାରାଜ ଶୀଘ୍ରହିଁ ମୃତ୍ୟୁକୁ ଆଲିଙ୍ଗନ କରିବା ପାଇଁ ପ୍ରସ୍ତୁତ ହୋଇ ବସିଥିବା ରାଜା ପରୀକ୍ଷିତଙ୍କୁ ସମ୍ବୋଧନ କରି କହୁଛନ୍ତି -

**କଳେର୍ଦୋଷନିଧେ ରାଜନ୍ନସ୍ତି ହ୍ୟେକୋ ମହାନ୍ ଗୁଣଃ ।**
**କୀର୍ତ୍ତନାଦେବ କୃଷ୍ଣସ୍ୟ ମୁକ୍ତସଙ୍ଗଃ ପରଂ ବ୍ରଜେତ୍ ॥**
**କୃତେ ଯଦ୍ ଧ୍ୟାୟତୋ ବିଷ୍ଣୁଂ ତ୍ରେତାୟାଂ ଯଜତୋ ମଖୈଃ ।**
**ଦ୍ୱାପରେ ପରିଚର୍ଯାୟାଂ କଳୌ ତଦ୍ଧରିକୀର୍ତନାତ୍ ॥**

(୧୨/୩/୫୧-୫୨)

'ହେ ରାଜନ୍ ! ଏହି ଦୋଷପରିପୂର୍ଣ୍ଣ କଳିଯୁଗରେ ଗୋଟିଏ ମହାନ୍ ଗୁଣ ଏହି ଯେ କେବଳମାତ୍ର ଶ୍ରୀକୃଷ୍ଣଙ୍କ 'ନାମ କୀର୍ତ୍ତନ' ଦ୍ୱାରା ମନୁଷ୍ୟ କର୍ମବନ୍ଧନରୁ ମୁକ୍ତ ହୋଇ ପରମାତ୍ମାଙ୍କୁ ପାଇଯାଏ । ସତ୍ୟ ଯୁଗରେ ଧ୍ୟାନଦ୍ୱାରା , ତ୍ରେତାରେ ଯଜ୍ଞାନୁଷ୍ଠାନ ଦ୍ୱାରା ଓ ଦ୍ୱାପରରେ ପରିଚର୍ଯାଦ୍ୱାରା ଯେଉଁ ପଦ ପ୍ରାପ୍ତ ହେଉଥିଲା ତାହାହିଁ କଳିଯୁଗରେ କେବଳ ଶ୍ରୀହରିନାମ କୀର୍ତ୍ତନ ଦ୍ୱାରା ପ୍ରାପ୍ତ ହୋଇଥାଏ ।'

ଏଇଥିପାଇଁ ଚାରି ଶହ ବର୍ଷ ପୂର୍ବେ ବଙ୍ଗଦେଶର ନବଦ୍ୱୀପ ନାମକ ସ୍ଥାନରେ ପ୍ରେମାବତାର ଶ୍ରୀ ଶ୍ରୀ ଚୈତନ୍ୟଦେବ ଅବତୀର୍ଣ୍ଣ ହୋଇ ମୁକ୍ତ କଣ୍ଠରେ ଏହି କଥାକୁ ହିଁ ଘୋଷଣା କରିଥିଲେ କି 'ଭୟ କର ନାହିଁ ' ସବୁଠୁଁ ବଡ଼ ପ୍ରାୟଶ୍ଚିତ୍ତ ଏବଂ ପରମାତ୍ମାଙ୍କ ପ୍ରେମସମ୍ପାଦନର ପରମୋତ୍ତମ

ସାଧନ 'ଶ୍ରୀହରି ନାମ' ଅଟେ । ସଂସାରବାସନା ପରିତ୍ୟାଗ କରି ଦୃଢ଼ ବିଶ୍ୱାସର ସହିତ ଏଇଥିରେ ଲାଗି ଯାଅ ଓ ନିଜକୁ ଉଦ୍ଧାରିନିଅ ।' ସେ କେବଳ ଏପରି କହି ନଥିଲେ, ବରଂ ନିଜେ ଲୋକଙ୍କ ଘରକୁ ଯାଇ ଯାଇ ଓ ନିଜର ପରମ ଭାଗବତ ସାଥୀମାନଙ୍କୁ ପଠାଇ-ପଠାଇ ଯେ କୌଣସି ପ୍ରକାରେ ଲୋକଙ୍କୁ ହରିନାମରେ ପ୍ରବୃତ୍ତ କରାଇଲେ । ଜଗାଇ-ମାଧାଇଙ୍କ ପରି ପ୍ରସିଦ୍ଧ ପାତକୀ ହରିନାମପରାୟଣ ହୋଇଗଲେ । ଲୋକମାନଙ୍କୁ ଏହି ସତ୍ ମାର୍ଗରେ ଲଗାଇବା କାର୍ଯ୍ୟରେ ସେ ଅନେକ ଗାଳି ଶୁଣିଲେ,ବହୁ କଟୁ କଥା ସହିଲେ, ବରଂ ଶ୍ରୀ ନିତ୍ୟାନନ୍ଦ ଓ ହରିଦାସ ଆଦି ଶ୍ରେଷ୍ଠ ଭକ୍ତଗଣ ଭୀଷଣ ପ୍ରହାର ସହ୍ୟ କରି ପାତ୍ରାପାତ୍ର ବିଗ୍ଚର ଛାଡ଼ି ଜନତା-ମଧ୍ୟରେ ହରିନାମ ବିତରଣ କଲେ ।

ଏହିଭଳି ଭକ୍ତଶ୍ରେଷ୍ଠ କବୀର, ନାନକ, ତୁକାରାମ, ରାମଦାସ,ଜ୍ଞାନଦେବ, ସୋପାନଦେବ ,ମୀରା, ତୁଳସୀଦାସ,ସୂରଦାସ, ନନ୍ଦଦାସ, ଚରଣଦାସ, ଦାଦୂଦୟାଲ, ସୁନ୍ଦରଦାସ, ସହଜୋବାଈ, ଦୟାବାଈ, ସଖୂବାଈ ଆଦି ଭଗବଦ୍ ଭକ୍ତମାନେ ମଧ୍ୟ ହରିନାମ କୁ ହିଁ ଜୀବମାନଙ୍କ କଲ୍ୟାଣର ପ୍ରଧାନ ଉପାୟ ବୋଲି ବୁଝିଲେ ଏବଂ ନିଜର ଦିବ୍ୟବାଣୀ ଦ୍ୱାରା ଏହା ହିଁ ପ୍ରଗ୍ଚର କଲେ । ଆଧୁନିକ କାଳରେ ମଧ୍ୟ ଭାରତବର୍ଷରେ ଯେତେ ମହାତ୍ମା-ସନ୍ଥ ହୋଇ ଯାଇଛନ୍ତି, ସମସ୍ତେ ଏକ ସ୍ୱରରେ ମୁକ୍ତକଣ୍ଠ ହୋଇ ନାମମହିମା ଗାଇଲେ ଓ ଗାଉଅଛନ୍ତି ।

ଯେଉଁ ନାମର ଏତେ ପ୍ରଭାବ, ମହତ୍ତ୍ୱ ଓ ବିସ୍ତୃତି ରହିଛି , ତା' ଉପରେ ମୋ ଭଳି ରସାନଭିଜ୍ଞ ମନୁଷ୍ୟ କ'ଣ ଲେଖିପାରେ ? ମୋର ତ ଏହା କେବଳ ଏକପ୍ରକାର ଦୁଃସାହସ ମାତ୍ର, ଯାହା ସନ୍ଥମାନଙ୍କ କୃପା ଓ ପ୍ରେମୀମାନଙ୍କ ପ୍ରେମ ଉପରେ ଭରସା ରଖି କରାଯାଇଛି । ମୁଁ ଭଗବନ୍ନାମର ମହିମା କ'ଣ ଲେଖିବି ? ମୁଁ ତ ନାମକୁ ନେଇ ବଞ୍ଚି ରହିଛି ।

ଶାସ୍ତ୍ରମାନଙ୍କରେ ନାମ-ମହିମାର ଏତେ ଅଧିକ ପ୍ରସଙ୍ଗ ଅଛି ଯେ-ସେଗୁଡ଼ିକର ଗଣନା କରିବା ମଧ୍ୟ ବଡ଼ କଠିନ କାର୍ଯ୍ୟ । ଏତେ ହେଲେ ମଧ୍ୟ ଦୁନିଆର ସବୁ ଲୋକେ ନାମ ଉପରେ କାହିଁକି ବିଶ୍ୱାସ କରୁ ନାହାନ୍ତି ? ନାମର ସାଧନ ତ କଠିନ ଜଣା ଯାଉନାହିଁ । ପୂଜା, ହୋମ, ଯଜ୍ଞ ଆଦିରେ ଯେତେ ଅଧିକ ପ୍ରୟାସ ଓ ସାମଗ୍ରୀ ସଂଗ୍ରହ କରିବାକୁ ପଡ଼େ, ଏଥିରେ ସେ ସବୁ କିଛି ମଧ୍ୟ କରିବାକୁ ପଡ଼େ ନାହିଁ । ତେବେ ମଧ୍ୟ -

## ସବୁ ଲୋକେ ନାମପରାୟଣ କାହିଁକି ହେଉ ନାହାନ୍ତି ?

ଏହାର ଉତ୍ତର ଏହି ଯେ - ନାମପରାୟଣ ହେବା ମୁହଁରେ ଯେତେ ସହଜ କୁହାଯାଏ , ପ୍ରକୃତରେ ସେତେ ସହଜ ନୁହେଁ । ବଡ଼ ପୁଣ୍ୟବଳରୁ ନାମ ପ୍ରତି ରୁଚି ଉପନ୍ନ ହୁଏ । ଶାସ୍ତ୍ର ପଢ଼ିବା, ଉପଦେଶ ଦେବା ,ବଡ଼-ବଡ଼ ଶାସ୍ତ୍ରାର୍ଥ କରିବା ସହଜ । କିନ୍ତୁ ନିଶ୍ଚିନ୍ତ ମନରେ ବିଶ୍ୱାସପୂର୍ବକ ଭଗବାନଙ୍କ ନାମ ନେବା ବଡ଼ କଠିନ ।

**ଜନ୍ମ ଜନ୍ମ ମୁନି ଜତନ କରାହିଂ । ଅଂତ ରାମ କହି ଆୱତ ନାହିଂ ॥**

କିଛି ଲୋକେ ତ ଏ ଆଡ଼କୁ ଧ୍ୟାନ ଦିଅନ୍ତି ନାହିଁ, ଯେଉଁ କେତେକ ଧ୍ୟାନ ଦିଅନ୍ତି , ସେମାନଙ୍କୁ ଏହାର ସୁକରତ୍ୱ (ସହଜପଣିଆ) ଦେଖି ଅଶ୍ରଦ୍ଧା ହୋଇଯାଏ । ସେମାନେ ବୁଝନ୍ତି ଯେ ଯେବେ ବଡ଼ ବଡ଼ ଯଜ୍ଞ, ତପ, ଦାନାଦି ସତ୍‌କର୍ମସମୂହ ଦ୍ୱାରା ହିଁ ପାପ ବାସନା ନାଶ ଯାଇ ମନୋବୃତ୍ତି ଶୁଦ୍ଧ ଓ ସାତ୍ତ୍ୱିକ ନ ହୁଏ, ତେବେ କେବଳ ଶବ୍ଦୋଚ୍ଚାରଣ ବା ଶବ୍ଦ ସ୍ମରଣ ଦ୍ୱାରା କ'ଣ ହୋଇ ପାରେ ? ସେହିମାନେ ଏହାକୁ ସାଧାରଣ ଶବ୍ଦ ଭାବି ଛାଡ଼ିଦିଅନ୍ତି । କିଛି ଲୋକ ପାଣ୍ଡିତ୍ୟର ଅଭିମାନରେ , ଶାସ୍ତ୍ରର ବାହ୍ୟ ଅବଲୋକନରେ କେବଳ ବାଗ୍‌ବିତଣ୍ଡାର୍ଥ ଶାସ୍ତ୍ରାର୍ଥପଟୁ ହୋଇ ନାମର ଆଦର କରନ୍ତି ନାହିଁ । ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ପୁରୁଷ ତ ପ୍ରାୟ ଆଧୁନିକ ପାଶ୍ଚାତ୍ୟ ସଭ୍ୟତାର ମାୟାମରୀଚିକାରେ ପଡ଼ି ଏପରି କଥାକୁ କେବଳ ମିଥ୍ୟା ବା କଳ୍ପିତ ବୋଲି ଭାବନ୍ତି । କେତେକ ସଂସ୍କାରାଭିମାନୀ ଲୋକ (ସଂସାରର ସଂସ୍କାର କେବଳ ଆମରି ବଳରେ ହେବ, ଈଶ୍ୱର କି ବସ୍ତୁ ? ତାହାର ଆବଶ୍ୟକତା ତ ଘରଦ୍ୱାରଶୂନ୍ୟ ସଂନ୍ୟାସୀମାନଙ୍କର ଅଛି, ଆମର ତା'ସହ କି ସମ୍ପର୍କ ? ଭଲ କାମ କରିବା, ଭଲ ଫଳ ଆପେହିଁ ହେବ, ଏପରି ଭାବନାରେ) ନାମର ତିରସ୍କାର କରନ୍ତି ।

ଭଗବନ୍ନାମର ସ୍ମରଣ ପ୍ରାୟ ବିପତ୍ତିକାଳରେ ହିଁ ହୋଇଥାଏ । ଯେବେ ମନୁଷ୍ୟର ସବୁ ଭରସା ବା ଆଶ୍ରୟ ଦୂରେଇ ଯାଏ, କୌଣସି ଆଡ୍ରୁ କିଛି ଆଶା ରହେ ନାହିଁ, କାହାରି ଠାରୁ କିଛି ଆଶ୍ୱାସନା ମିଳେ ନାହିଁ , ଦୁନିଆର ଲୋକେ ମୁହଁରେ କହିବାକୁ ଚ୍ୱାହାନ୍ତି ନାହିଁ, ନିର୍ଧନତା, ନିର୍ଜନତା, ଆରୋଗ୍ୟହୀନତା ଓ ଅପମାନ ଯୋଗୁଁ ମନ ଉଦ୍‌ବିଗ୍ନ ହୋଇ ଉଠେ,

********************************************************

ଦୁଃଖସମୂହର ବିଷମୟୀ ଜ୍ୱାଳାରେ ହୃଦୟ ଦଗ୍ଧ ହେବାକୁ ଲାଗେ; ମିତ୍ର, ସ୍ନେହୀ, ସୁହୃଦ୍ ଏବଂ ଘରଲୋକଙ୍କର ଏକାନ୍ତ ଅଭାବ ହୋଇଯାଏ, ସେତେବେଳେ ପ୍ରାଣ କାନ୍ଦିଉଠେ । ହୃଦୟ ଖୋଜେ କୌଣସି ଏପରି ଶୀତଳ-ସୁରମ୍ୟ ବସ୍ତୁକୁ, ଯାହାକୁ ପାଇ ତାକୁ କିଛି ଶୀତଳତା, କିଛି ଶାନ୍ତି ମିଳିଯାଇ ପାରେ । ଏପରି ଦୁଃସମୟରେ ଛଟପଟ ହେଉଥିବା ବ୍ୟାକୁଳ ପ୍ରାଣ ସ୍ୱତଃ ସେହି ଅଜ୍ଞାତ ଓ ଅଦୃଶ୍ୟ ପ୍ରିୟତମଙ୍କ କୋଳରେ ଆଶ୍ରୟ ଖୋଜେ; ଏପରି ସମୟରେ ବଡ଼ ବଡ଼ ଶାସ୍ତ୍ରାଭିମାନୀ, ଶାସ୍ତ୍ରାର୍ଥରେ ଯୁକ୍ତିତର୍କ ଦ୍ୱାରା ଈଶ୍ୱରଙ୍କୁ ଖଣ୍ଡନ କରିବା ବ୍ୟକ୍ତି, ଧନ ଓ ପଦ ଗର୍ବରେ ଈଶ୍ୱରଙ୍କୁ ତୁଚ୍ଛ ଭାବୁଥିବା ବ୍ୟକ୍ତି ଏବଂ ବିଷୟ-ମଦିରାର ଅନବରତ ପାନରେ ଉନ୍ମତ୍ତ ହୋଇ ବିଚରଣ କରୁଥିବା ବ୍ୟକ୍ତିଙ୍କ ମୁହଁରୁ ମଧ୍ୟ ହଠାତ୍ ଏପରି ଉଦ୍ଗାର ବାହାରି ପଡ଼େ କି 'ହେ ରାମ ! ହେ ଈଶ୍ୱର ! ତୁ ହିଁ ରକ୍ଷା କର! ତୋ ବିନା ବର୍ତ୍ତମାନ ଆଉ କେହି ଆଶ୍ରୟଦାତା ନାହିଁ ।' ଏପରି ବିପଦ-ସଙ୍କୁଳ ମୁହୂର୍ତ୍ତରେ ଜିହ୍ୱା ସ୍ୱଚ୍ଛନ୍ଦରୂପେ ଭଗବନ୍ନାମ ଉଚ୍ଚାରଣ କରିବାକୁ ଲାଗେ ଏବଂ ଏପରି ଶୋକ-ମୋହପୂର୍ଣ୍ଣ ସମୟରେ ମନ ଓ ପ୍ରାଣ ମଧ୍ୟ ତାହାକୁ (ସେଇନାମକୁ) ସ୍ମରଣ କରିବାରେ ଲାଗିଯାଏ । ଏହି ଲୋଭରୁ ତ ମାତା କୁନ୍ତୀ ଭଗବାନ୍ ଶ୍ରୀକୃଷ୍ଣଙ୍କ ଠାରୁ ବିପତ୍ତିରୂପକ ବରଦାନ ମାଗି ଥିଲେ । ସେ କହିଥିଲେ ଯେ-'ହେ କୃଷ୍ଣ ! ତୋର ସ୍ମରଣ ବିପତ୍ତିରେ ହିଁ ହୁଏ, ଏଥିପାଇଁ ମୋତେ ବାରମ୍ବାର ବିପତ୍ତିଜାଲରେ ପକାଉ ଥାଅ ।'

ତାତ୍ପର୍ଯ୍ୟ ଏହି ଯେ- ଭଗବନ୍ନାମର ସ୍ମରଣ ପ୍ରାୟ ଦୁଃଖସମୟରେ ହୁଏ । ଦୁଃଖୀ, ଅନାଶ୍ରିତ ଓ ଦୀନଜନ ହିଁ ପ୍ରାୟ ତାଙ୍କର ନାମ ନେଇ ଥାଆନ୍ତି, ଏଣୁ କିଛି ଲୋକ ଯେଉଁମାନେ ବିଷୟ-ବାହୁଲ୍ୟ ଦ୍ୱାରା ମୋହବଶ ହୋଇ ନିଜକୁ ବଡ଼ ବୁଦ୍ଧିମାନ୍ ,ଧନ-ଜନବାନ୍ ଓ ସୁଖୀ ବୋଲି ଭାବନ୍ତି, ସେମାନେ ଭଗବନ୍ନାମ ନେଇ ନିଜର ବିଗ୍ରହଦ୍ୱାରା ଦୀନ-ଦୁଃଖୀ ଓ ଅନାଶ୍ରିତଙ୍କ ଶ୍ରେଣୀରେ ସମ୍ମିଳିତ ହେବାକୁ ଚାହାନ୍ତି ନାହିଁ ।

କିଛି ଜ୍ଞାନାଭିମାନୀ ଲୋକ ଜ୍ଞାନର ଅଭିମାନରେ ହରିନାମକୁ ଗୌଣ ବା ମନ୍ଦ ସାଧନ ବୁଝି ତ୍ୟାଗ କରି ଦିଅନ୍ତି । ଅଧିକାଂଶ ଲୋକ ସଂସାରରେ ବଡ଼ଲୋକ ବୋଲାଉ ଥିବା ବ୍ୟକ୍ତିଙ୍କ ପଛେ-ପଛେ ହିଁ ଚାଲି ଥାଆନ୍ତି । ଏଇ ସବୁ କାରଣରୁ ସବୁ ଲୋକ ହରିନାମପରାୟଣ ହେଉନାହାନ୍ତି ।

ଆହୁରି ଗୋଟିଏ କାରଣ ଅଛି, ଯଦ୍ଦ୍ୱାରା ନାମ-ବିସ୍ମୃତିରେ ଅଧିକ ବାଧା ଉପୁଜେ, ତାହା ହେଉଛି, ନାମକୁ ପାପର ସାଧନ କରି ନେବା । ଏପରି ଲୋକ ସଂସାରରେ ବହୁତ ଅଛନ୍ତି ,ଯେଉଁମାନେ ପାପ କରିବାକୁ ଟିକିଏ ହେଲେ ମଧ୍ୟ ସଙ୍କୋଚ କରନ୍ତି ନାହିଁ ଏବଂ ଭାବି ବସନ୍ତି ଯେ ନାମ ନେବା କ୍ଷଣି ହିଁ ପାପ ନାଶ ହୋଇଯିବ । ଏଥିରେ କୌଣସି ସନ୍ଦେହ ନାହିଁ କି ହରିନାମ ପାପରୂପୀ ଘାସର ବଡ଼-ବଡ଼ ଗଦାକୁ ଜାଳି ଦେବା ପାଇଁ ସାକ୍ଷାତ୍ ଅଗ୍ନି ଅଟେ । ବଡ଼-ରୁ-ବଡ଼ ପାପ ନାମ - ଉଚ୍ଚାରଣମାତ୍ରକେ ନଷ୍ଟ ହୋଇ ଯାଏ ।

ବୈଶମ୍ପାୟନ ସଂହିତାରେ କୁହାଯାଇଛି -

**ସର୍ବଧର୍ମବହିର୍ଭୂତଃ ସର୍ବପାପରତସ୍ତଥା ।**
**ମୁଚ୍ୟତେ ନାତ୍ର ସନ୍ଦେହୋ ବିଷ୍ଣୋର୍ନାମାନୁକୀର୍ତ୍ତନାତ୍ ॥**

ସର୍ବଧର୍ମତ୍ୟାଗୀ ଓ ସର୍ବପାପନିରତ ପୁରୁଷ ମଧ୍ୟ ଯଦି ହରିନାମ କୀର୍ତ୍ତନ କରେ, ତା'ହେଲେ ସେ ପାପସମୂହରୁ ମୁକ୍ତ ହୋଇଯାଏ ।ଏଥିରେ କୌଣସି ସନ୍ଦେହ ନାହିଁ ଯେ ପୂର୍ବ ପାପସମୂହର ବିନାଶପାଇଁ ହରିନାମ ସବୁଠୁଁ ବଡ଼ ଓ ଶୀଘ୍ର ଫଳଦାୟକ ପ୍ରାୟଶ୍ଚିତ୍ତ ଅଟେ । ନାମର ପ୍ରତାପରୁ ପାପୀ-ଠୁଁ-ପାପୀ ମନୁଷ୍ୟ ମଧ୍ୟ ଭଗବାନଙ୍କର ପରମପଦକୁ ପ୍ରାପ୍ତ ହୋଇ ଯାଏ, କିନ୍ତୁ ଯେଉଁ ମନୁଷ୍ୟ ଜାଣି-ବୁଝି ହରିନାମର ଦ୍ୱାହି ଦେଇ ମନରେ ଦୃଢ ସଂକଳ୍ପ କରି ପାପସମୂହରେ ପ୍ରବୃତ୍ତ ହୁଏ, ତାହାର କୌଣସି ଠାରେ ନିସ୍ତାର ହୁଏ ନାହିଁ । ରୋଗନିବୃତ୍ତି ପାଇଁ ହିଁ ଔଷଧସେବନ କରାଯାଏ; କିନ୍ତୁ ଯେଉଁ ଲୋକେ ବେମାରି ବଢ଼ାଇବା ପାଇଁ ଔଷଧ ସେବନ କରନ୍ତି, ସେମାନଙ୍କୁ ମୃତ୍ୟୁବ୍ୟତୀତ ଆଉ କି ଫଳ ମିଳି ପାରେ ? ପଦ୍ମପୁରାଣର କଥା ହେଲା -

**ନାମ୍ନୋ ବଳାଦ୍ ଯସ୍ୟ ହି ପାପବୁଦ୍ଧିର୍ନ ବିଦ୍ୟତେ ତସ୍ୟ ଯମୈର୍ହିଶୁଦ୍ଧିଃ ।**

ଯିଏ ନାମର ଆଶ୍ରୟ ନେଇ ପାପସମୂହରେ ପ୍ରବୃତ୍ତ ହୁଏ, ସେ ଅନେକପ୍ରକାର ଯମ-ଯାତନା ଭୋଗ କଲାପରେ ମଧ୍ୟ ଶୁଦ୍ଧ ହୁଏ ନାହିଁ ।

**ଜେ ନର ନାମପ୍ରତାପ ବଳ, କରତ ପାପ ନିତ ଆପ ।**
**ବଜ୍ରଲେପ ହ୍ୱୈ ଜାୟଁ ତେ ଅମିଟ ସୁଦୁଷ୍କର ପାପ ॥**

ଏଥିରେ କୌଣସି ସଂଦେହ ନାହିଁ ଯେ -

**ପରଦାରରତୋ ବାପି ପରାପକୃତିକାରକଃ ।**
**ସଂଶୁଦ୍ଧୋ ମୁକ୍ତିମାପ୍ନୋତି ହରେର୍ନାମାନୁକୀର୍ତନାତ୍ ॥**

(ମତ୍ସ୍ୟ ପୁରାଣ)

'ପରସ୍ତ୍ରୀଗାମୀ ଓ ପରପୀଡ଼ନକାରୀ ମନୁଷ୍ୟ ମଧ୍ୟ ହରିନାମକୀର୍ତ୍ତନ-ଦ୍ୱାରା ଶୁଦ୍ଧ ହୋଇ ମୁକ୍ତି ପାଇଯାଏ ।' ଏଥିରେ ମଧ୍ୟ କୌଣସି ସନ୍ଦେହ ନାହିଁ ଯେ- ଭାଗବତର କଥାନୁସାରେ ଚୋର, ମଦ୍ୟପ, ମିତ୍ରଦ୍ରୋହୀ, ସ୍ତ୍ରୀ, ରାଜା, ପିତା, ଗାଈ ତଥା ବ୍ରାହ୍ମଣଙ୍କୁ ହତ୍ୟାକାରୀ, ଗୁରୁପତ୍ନୀଗାମୀ ଓ ଅନ୍ୟାନ୍ୟ ବଡ଼-ବଡ଼ ପାପରେ ରତ ହେଉଥିବା ପୁରୁଷ ମଧ୍ୟ ଭଗବାନଙ୍କ ନାମଗ୍ରହଣମାତ୍ରକେ ତତ୍କାଳ ମୁକ୍ତ ହୋଇଯାଏ ।

**ପାତକ ଉପପାତକ ମହା, ଜେତେ ପାତକ ଔର ।**
**ନାମ ଲେତ ତତ୍କାଳ ସବ, ଜରତ ଖରତ ତେହି ଠୌର ॥**

'ପୂର୍ବରୁ କେତେ ବଡ଼-ବଡ଼ ପାପ ମଧ୍ୟ ସଞ୍ଚିତ ହୋଇ ଥାଉନା କାହିଁକି, ଶୁଦ୍ଧ ମନରେ ଭଗବନ୍ନାମ ନେବା କ୍ଷଣି ସେ ସବୁ ଅଗ୍ନିରେ ଇନ୍ଧନଭଳି ଜଳି ଯାଆନ୍ତି; କିନ୍ତୁ ଏହାର ଅର୍ଥ ଏହା ନୁହେଁ ଯେ ଭଗବନ୍ନାମ ନେଉଥିବା ଲୋକଙ୍କୁ ପାପ କରିବାପାଇଁ ଛାଡ଼ ମିଳିଯାଏ । ଭଗବାନଙ୍କ ନାମ ବି ନେଉଥିବା ଆଉ ତା ସଂଗେ - ସଂଗେ ମନ ଇଚ୍ଛା ପାପ ମଧ୍ୟ କରୁଥିବା । ଏପ୍ରକାର ଯେଉଁମାନଙ୍କର କୁବାସନା ଅଛି, ସେମାନଙ୍କ ପାଇଁ ତ ଫଳ ଓଲଟା ହିଁ ହୁଏ । ନାମ-ମହିମାର ଦ୍ୱାହି ଦେଇ ପାପ କରୁଥିବା ଲୋକକୁ ନରକରେ ମଧ୍ୟ ସ୍ଥାନ ମିଳେ ନାହିଁ । ଯେଉଁମାନେ ଜାଣି-ଶୁଣି ଧନଲୋଭରେ ଚୋରି କରି, ପରସ୍ତ୍ରୀଗମନ କରି,କ୍ରୋଧ ଅବା ଲୋଭ ବଶତଃ ହିଂସା କରି, ଗୁରୁ-ଶାସ୍ତ୍ରମାନଙ୍କର ଅପମାନ କରି, ମଦ୍ୟପାନ ଓ ମ୍ଳେଚ୍ଛ-ଭୋଜନାଦି କରି, ସ୍ତ୍ରୀହତ୍ୟା-ଭ୍ରୂଣହତ୍ୟା କରି ଏବଂ ମିଥ୍ୟା ସାକ୍ଷ୍ୟ ଦେଇ ବା ମିଥ୍ୟା ମାମଲା ସଜେଇ, 'ରାମ-ରାମ' କହି ଦିଅନ୍ତି ଓ ନିଜର ମୁକ୍ତି ମାନି ନିଅନ୍ତି, ସେମାନଙ୍କ ପାପସମୂହର ବିନାଶ ହୁଏ ନାହିଁ । ସେମାନଙ୍କ ପାପମାନ ତ ବଜ୍ରଲେପ ହୋଇଯାଏ । ଏପରି ଲୋକଙ୍କୁ ହିଁ ଦେଖି ଭଲ ଲୋକେ ମଧ୍ୟ ନାମ-ମହିମାକୁ ଅର୍ଥବାଦ (ସ୍ତୁତିମାତ୍ର) ଭାବି ନାମପରାୟଣ ହୁଅନ୍ତି ନାହିଁ । କିନ୍ତୁ ଏହା ସେମାନଙ୍କର ଭୂଲ ଅଟେ -

## ନାମ ମହିମା କେବଳ ରାଚକ ବାକ୍ୟ ନୁହେଁ -

ଏହା ସର୍ବଦା ଯଥାର୍ଥ ତତ୍ତ୍ୱ ଅଟେ । ବଡ଼ ବଡ଼ ଋଷିଗଣ ଓ ସନ୍ଥ-ମହାତ୍ମାମାନେ ନାମ-ମହିମାର ପ୍ରତ୍ୟକ୍ଷ ଅନୁଭବ କରି ତା'ର ଗୁଣ ହିଁ ଗାଇଅଛନ୍ତି । ଏବେ ମଧ୍ୟ ଏପରି ଲୋକ ମିଳି ପାରନ୍ତି, ଯେଉଁମାନଙ୍କୁ ନାମର ପ୍ରବଳ ଶକ୍ତିର ଅନେକ ଥର ଅନେକ ପ୍ରକାରର ଅନୁଭବ ହୋଇ ସାରିଛି । କିନ୍ତୁ, ସେହି ଲୋକମାନେ ସେହି ସବୁ ରହସ୍ୟ ଗୁଡ଼ିକୁ ଅଶ୍ରଦ୍ଧାଳୁ ଓ ନାମ ଅପମାନକାରୀ ଲୋକଙ୍କ ଆଗରେ କହିବାକୁ ଚାହାନ୍ତି ନାହିଁ , କାରଣ ଏହା ମଧ୍ୟ ଏକ ନାମର ଅପରାଧ ଅଟେ -

**ଅଶ୍ରଦ୍ଧଧାନେ ବିମୁଖେଽପ୍ୟଶୃଣ୍ୱତି**
**ଯଶ୍ଚୋପଦେଶଃ ଶିବନାମାପରାଧଃ ।**

'ଅଶ୍ରଦ୍ଧାଳୁ, ନାମବିମୁଖ ଆଉ ଶୁଣିବାକୁ ଚାହୁଁନଥିବା ଲୋକଙ୍କୁ ନାମର ଉପଦେଶ ଦେବା କଲ୍ୟାଣରୂପ ନାମର ଏକ ଅପରାଧ ଅଟେ ।'

ଯେଉଁମାନେ ନାମର ରସିକ ଅଟନ୍ତି, ଯେଉଁମାନଙ୍କୁ ପ୍ରକୃତ ରସାସ୍ୱାଦର କେବେ ଅବସର ପ୍ରାପ୍ତ ହୋଇ ଯାଇଛି, ସେମାନେ ତ ପୁଣି ଅନ୍ୟ ଆଡ଼କୁ ଭୂଲରେ ମଧ୍ୟ ଚାହାନ୍ତି ନାହିଁ । ସେମାନେ ଶରୀର ପ୍ରତି ନା କିଛି ଖାତିରି କରନ୍ତି ନା ଜଗତ୍ ପ୍ରତି । ମତୁଆଲା ମଦୁଆ ଭଳି ନାମ-ପ୍ରେମରେ ପାଗଳ ହୋଇ ସେମାନେ କେବେ ହସନ୍ତି, କେବେ କାନ୍ଦନ୍ତି, କେବେ ଗାଆନ୍ତି, କେବେ ନାଚନ୍ତି, ସେମାନଙ୍କ ପାଇଁ ପୁଣି କିଛି ଆପଣା-ପର ରହନ୍ତି ନାହିଁ । ଏଭଳି ପ୍ରେମୀମାନଙ୍କ ସମ୍ବନ୍ଧରେ ମହାତ୍ମା ସୂରଦାସ ମହୋଦୟ ଲେଖିଛନ୍ତି -

**ପ୍ରେମ ଲଗ୍ୟୋ ପରମେଶ୍ୱରସୋଁ ତବ ଭୂଲି ଗୟୋ ସିଗରୋ ଘରବାରା ।**
**ଜ୍ୟୋଁ ଉନ୍ମତ ଫିରେ ଜିତ ହୀ ତିତ ନେକୁ ରହୀ ନ ସରୀର ସଁଭାରା ॥**
**ସ୍ୱାସ ଉସ୍ୱାସ ଉଠୈ ସବ ରୋମ ଚଲୈ ଦୃଗ ନୀର ଅଖଂଡିତ ଧାରା ।**
**ସୁନ୍ଦର କୌନ କରେ ନଓ୍ୱଧା ବିଧି ଛାକି ପରୟୋ ରସ ପୀ ମତୱାରା ॥**

ପ୍ରକୃତରେ ଏଭଳି ପୁରୁଷ ନାମର ଯଥାର୍ଥ ଭକ୍ତ ଅଟନ୍ତି ଓ ଏହି ଲୋକଙ୍କ ଦ୍ୱାରା କରା ଯାଇଥିବା ନାମୋଚ୍ଚାରଣ ଦୁନିଆକୁ ପବିତ୍ର କରି ଦିଏ । ଯେ ପର୍ଯ୍ୟନ୍ତ ଏପରି ପ୍ରେମର ପାଗଳାମି ପ୍ରାପ୍ତ ନ ହୋଇଛି, ସେ

ପର୍ଯ୍ୟନ୍ତ ପ୍ରେମ ମାର୍ଗରେ ମଧ୍ୟ ଶାସ୍ତ୍ରମାନଙ୍କ ମର୍ଯ୍ୟାଦା, ସଂପୂର୍ଣ୍ଣ ରକ୍ଷା କରିବା ଉଚିତ୍ । ଭଗବାନ ନାରଦ କହୁଛନ୍ତି -

**ଅନ୍ୟଥା ପାତିତ୍ୟାଶଙ୍କୟା ।**

( ଭକ୍ତିସୂତ୍ର ୧୩)

'ନ ହେଲେ ପତିତ ହେବାର ଆଶଙ୍କା ଅଛି' ଅତଏବ ଆରମ୍ଭରେ ନିଜ-ନିଜର ବର୍ଣ୍ଣାଶ୍ରମାନୁମୋଦିତ ସଂଧ୍ୟା-ବନ୍ଦନ, ପିତା, ମାତା ଆଦିଙ୍କ ସେବା, ପରିବାର ସଂରକ୍ଷଣ ଆଦି ବୈଦିକ ଓ ଲୌକିକ କାର୍ଯ୍ୟଗୁଡ଼ିକୁ କରିବା ଉଚିତ୍ । ସ୍ମୃତିବିହିତ କାମଗୁଡ଼ିକୁ ତ୍ୟାଗ କରିବାର ଆବଶ୍ୟକତା ନାହିଁ, ଯଥାସମୟ ଓ ଯଥାସ୍ଥାନରେ ସେଗୁଡ଼ିକର ଆଚରଣ ଅବଶ୍ୟ କରିବା ଉଚିତ୍ । ରାମ ନାମ ଏପରି ଧନ ନୁହେଁ, ଯାହାକୁ ତୁଚ୍ଛ କାର୍ଯ୍ୟରେ ଖର୍ଚ୍ଚ କରାଯିବ । ଯେଉଁ ଲୋକ ସାଧାରଣ କାଚ ଖଣ୍ଡିଏ କିଣିବାକୁ ଯାଇ ବଦଳରେ ବହୁମୂଲ୍ୟ ହୀରା ନେଇ ଆସେ, ସେ କେବେ ହେଲେ ବୁଦ୍ଧିମାନ ବୋଲି କଥିତ ହେବ ନାହିଁ । ଏହି ଭଳି ଯେଉଁ କାର୍ଯ୍ୟ ଲୌକିକ ବା ସ୍ମୃତିବିହିତ କର୍ମଗୁଡ଼ିକ ଆଚରଣରେ ସିଦ୍ଧ ହୋଇ ପାରେ, ସେଥିରେ ନାମର ପ୍ରୟୋଗ କରିବା, ରାଜାଧିରାଜ ଦ୍ୱାରା ଝାଡ଼ୁ ଦିଆଇବା ସଙ୍ଗେ ସମାନ ଅଟେ - ସୁନାକୁ ମାଟି ଭାଉରେ ବିକିବା ସହ ସମାନ ଅଟେ । ଅତଏବ ନାମ-ଜପରେ ସ୍ମୃତିବିହିତ କାର୍ଯ୍ୟଗୁଡ଼ିକୁ ତ୍ୟାଗ କରିବାର କୌଣସି ଆବଶ୍ୟକତା ନାହିଁ ।

କେତେକ ଲୋକଙ୍କର ଏହି ଆଶଙ୍କା ଅଛି କି ଆଜିକାଲି ନାମ ନେବା ବାଲା ତ ବହୁତ ଲୋକ ଦେଖା ଯାଉଛନ୍ତି, କିନ୍ତୁ ସେମାନଙ୍କ ଦଶାଗୁଡିକୁ ଦେଖିଲେ ତ ଜଣାପଡୁଛି ଯେ ସେମାନଙ୍କର କିଛି ଲାଭ ହୋଇ ନାହିଁ । ଯେଉଁ ନାମକୁ ଥରେ ଉଚ୍ଚାରଣ କରିବା ମାତ୍ରକେ ସଂପୂର୍ଣ୍ଣ ପାପ ନାଶ ହେବା କଥା କୁହାଯାଉଛି, ସେହି ନାମକୁ ଲକ୍ଷେ ବାର ଉଚ୍ଚାରଣ କରିଲେ ମଧ୍ୟ ଲୋକେ ପାପରେ ପ୍ରବୃତ୍ତ ଆଉ ଦୁଃଖୀ ହୋଇ ଯାଉଛନ୍ତି । ଏହାର କାରଣ କ'ଣ ? ଏହାର ଉତ୍ତରରେ, ପ୍ରଥମ କଥା ଏହା ଅଟେ ଯେ - ଲକ୍ଷେଥର ନାମର ଆବୃତ୍ତି ସେମାନଙ୍କ ଦ୍ୱାରା ପ୍ରକୃତ ପକ୍ଷରେ ହେଉନାହିଁ । ଭ୍ରମରେ ବୁଝିନିଆ ଯାଉଛି । ଦ୍ୱିତୀୟ କାରଣ ଏହା ଅଟେ ଯେ - ସେମାନଙ୍କର ନାମୋଚ୍ଚାରଣରେ ପ୍ରକୃତ ଶ୍ରଦ୍ଧା ନାହିଁ । ନାମର ଏହି ମାହାତ୍ମ୍ୟରେ

****************************************************

ସେମାନଙ୍କର ନିଜର ହିଁ ସଂଶୟ ଅଛି । ଭଗବାନ୍ ଗୀତାରେ କହିଛନ୍ତି - **'ସଂଶୟାତ୍ମା ବିନଶ୍ୟତି'** ଏଣୁ ସେମାନଙ୍କୁ ସଂପୂର୍ଣ୍ଣ ଲାଭ ମିଳୁନାହିଁ । ଭଜନକାରୀଠାରେ ଶ୍ରଦ୍ଧାର କିଛି ଅଂଶ ଅବଶ୍ୟ ହିଁ ରହିଥାଏ । ଯଦି ଶ୍ରଦ୍ଧାର ସର୍ବଥା ଅଭାବ ଘଟେ; ତାହେଲେ ଭଜନରେ ପ୍ରବୃତ୍ତି ହିଁ ହୁଏ ନାହିଁ । କିଞ୍ଚିତ୍ ଶ୍ରଦ୍ଧାହେବା ବିନା କୌଣସି ବିଶେଷ କାର୍ଯ୍ୟରେ ପ୍ରବୃତ୍ତ ହେବା ବଡ କଠିନ । ଅତଏବ ଯେଉଁମାନେ ନାମ ଗ୍ରହଣ କରୁଛନ୍ତି, ସେମାନଙ୍କ ଠାରେ ଶ୍ରଦ୍ଧାର କିଛି ଅଂଶ ଅବଶ୍ୟ ଅଛି, କିନ୍ତୁ ଶ୍ରଦ୍ଧାର ସେହି କ୍ଷୁଦ୍ର ଅଂଶ ଅପେକ୍ଷା ସଂଶୟର ମାତ୍ରା ବହୁତ ଅଧିକ । ଏଣୁ ସେମାନଙ୍କୁ ବାସ୍ତବିକ ଫଳରୁ ବଂଚିତ ରହିବାକୁ ପଡୁଛି । ଗଙ୍ଗାସ୍ନାନ ଦ୍ୱାରା ପାପସମୂହର ଅଶେଷ ନାଶ ହେବା କଥା କୁହା ଯାଇଛି, କିନ୍ତୁ ପ୍ରତିଦିନ ଗଙ୍ଗାସ୍ନାନ କରୁଥିବା ଲୋକେ ମଧ୍ୟ ପାପରେ ପ୍ରବୃତ୍ତ ହେବାର ଦେଖା ଯାଆନ୍ତି (ଯଦ୍ୟପି ଥରକର ଭଗବନ୍ନାମ ହଜାରେ ଥରର ଗଙ୍ଗାସ୍ନାନ ଠାରୁ ଅଧିକ) ।

## ଶ୍ରଦ୍ଧା ଉପରେ ଗୋଟିଏ ଦୃଷ୍ଟାନ୍ତ

ଏକଦା ଭଗବାନ୍ ଶିବ ପାର୍ବତୀଙ୍କ ସହ ହରିଦ୍ୱାରରେ ବୁଲୁଥିଲେ । ପାର୍ବତୀ ଦେଖିଲେ ଯେ ସହସ୍ର-ସଂଖ୍ୟାର ମନୁଷ୍ୟ ଗଂଗାରେ ଗାଧୋଇ-ପାଧୋଇ ହର-ହର ଉଚ୍ଚାରଣ କରି ଚାଲି ଯାଉଛନ୍ତି, କିନ୍ତୁ ପ୍ରାୟ ସମସ୍ତେ ଦୁଃଖୀ ଓ ପାପପରାୟଣ ଅଟନ୍ତି । ପାର୍ବତୀ ଖୁବ୍ ଆଶ୍ଚର୍ଯ୍ୟର ସହ ଶିବଙ୍କୁ ପଚାରିଲେ - ହେ ଦେବଦେବ ! ଗଙ୍ଗାରେ ଏତେ ଥର ସ୍ନାନ କଲାପରେ ମଧ୍ୟ ଏମାନଙ୍କର ପାପ ଓ ଦୁଃଖସମୂହର ବିନାଶ କାହିଁକି ନ ହେଲା ? କ'ଣ ଗଙ୍ଗାର ସାମର୍ଥ୍ୟ ନାହିଁ ? ଭଗବାନ୍ ଶିବ କହିଲେ - 'ପ୍ରିୟେ ! ଗଙ୍ଗାରେ ତ ସେହି ସାମର୍ଥ୍ୟ ଅଛି; କିନ୍ତୁ ଏହି ଲୋକମାନେ ପାପନାଶିନୀ ଗଙ୍ଗାରେ ସ୍ନାନ କରି ନାହାନ୍ତି, ତେଣୁ ଏମାନଙ୍କର ଲାଭ କିପରି ହେବ ? ପାର୍ବତୀ ଆଶ୍ଚର୍ଯ୍ୟର ସହ କହିଲେ 'ସ୍ନାନ କିପରି ନ କଲେ ? ସମସ୍ତେ ତ ଗାଧୋଇ ପାଧୋଇ ଆସୁଛନ୍ତି ? ଏପର୍ଯ୍ୟନ୍ତ ଏମାନଙ୍କ ଶରୀର ମଧ୍ୟ ଶୁଖି ନାହିଁ ।' ଶିବ କହିଲେ - 'ଏମାନେ କେବଳ ଜଳରେ ବୁଡ଼ ପକାଇ ଆସୁଛନ୍ତି । ତୁମକୁ କାଲି ଏହାର ରହସ୍ୟ ବୁଝାଇବି' । ତା ପର ଦିନ ଖୁବ୍ ଜୋରରେ ବର୍ଷା ହେବାକୁ ଲାଗିଲା । ଗଳି-କନ୍ଦି କାଦୁଅରେ ପୂରିଗଲା । ଗୋଟିଏ ଚଉଡ଼ା ରାସ୍ତାରେ ଗହିରିଆ ଖାତଟିଏ ଥିଲା, ଚାରିଆଡୁ ଚିକିଟା

କାନ୍ଦୁଅ ଭରି ଯାଉଥିଲା । ଭଗବାନ୍ ଶିବ ଲୀଳାରେ ବୃଦ୍ଧରୂପ ଧାରଣ କରି ନେଲେ ଏବଂ ଦୀନ-ଅସହାୟ ଭଳି ଖାତରେ ଏପରି ପଡିଗଲେ, ସତେ ଯେପରି କୌଣସି ଲୋକ ଗ୍ଲୁଗ୍ଲୁ ଖାତରେ ପଡ଼ିଯାଇଛି ଏବଂ ବାହାରିବାକୁ ଚେଷ୍ଟା କଲେ ମଧ୍ୟ ବାହାରି ପାରୁ ନାହିଁ ।

ପାର୍ବତୀଙ୍କୁ ଏହା ବୁଝାଇ ଖାତପାଖରେ ବସାଇ ଦେଲେ କି ଦେଖ ! ତୁମେ ଲୋକଙ୍କୁ ଶୁଣାଇ ଶୁଣାଇ ଏପରି ଡାକ ପକାଉ ଥାଅ ଯେ - ମୋର ବୃଦ୍ଧ ସ୍ୱାମୀ ଅକସ୍ମାତ୍ ଖାତରେ ପଡିଯାଇଛନ୍ତି, କେହି ପୁଣ୍ୟାତ୍ମା ଏହାଙ୍କୁ ବାହାର କରି ଏହାଙ୍କ ପ୍ରାଣ ରକ୍ଷା କରନ୍ତୁ ଓ ମୋ ଭଳି ଅସହାୟାକୁ ସାହା ହୁଅନ୍ତୁ ।' ଭଗବାନ୍ ଶିବ ଆହୁରି ବୁଝାଇ କହି ଦେଲେ କି ଯେବେ କେହି ମୋତେ ଖାତରୁ ବାହାର କରିବା ପାଇଁ ପ୍ରସ୍ତୁତ ହୁଏ, ତେବେ ଏତିକି ଆଉ କହିଦେବ ଯେ ଭାଇ ! ମୋ ସ୍ୱାମୀ ସର୍ବଥା ନିଷ୍ପାପ ଅଟନ୍ତି । ଏହାଙ୍କୁ ସେହି ବ୍ୟକ୍ତି ଛୁଇଁବେ ଯିଏ ନିଜେ ନିଷ୍ପାପ ହୋଇଥିବେ । ଯଦି ଆପଣ ନିଷ୍ପାପ, ତାହେଲେ ଏହାଙ୍କୁ ହାତ ଲଗାନ୍ତୁ ବା ଛୁଅନ୍ତୁ, ନ ହେଲେ ଛୁଇଁଲା କ୍ଷଣି ଭସ୍ମ ହୋଇଯିବେ ।' ପାର୍ବତୀ ତଥାସ୍ତୁ କହି ଖାତକଡ଼ରେ ବସିଗଲେ ଓ ଯା-ଆସ କରୁଥିବା ଲୋକଙ୍କୁ ଶୁଣେଇ ଶୁଣେଇ ଶିବଙ୍କ ଶିଖାଇ ଥିବା କଥା କହିବାକୁ ଲାଗିଲେ । ଗଙ୍ଗାରେ ଗାଧୋଇ ଦଳକୁ ଦଳ ଲୋକ ଆସୁଥାଆନ୍ତି । ସୁନ୍ଦରୀ ଯୁବତୀଟିକୁ ଏପରି ବସିବାର ଦେଖି କେତେକଙ୍କ ମନରେ ପାପ ଆସିଲା । କେହି ଲୋକ ଲଜ୍ଜା ହେତୁ ଡରିଲେ ତ କେତେକଙ୍କୁ କିଛି ଧର୍ମଭୟ ହେଲା, କେତେକ ଆଇନ୍-କାନୁନକୁ ଭୟ କଲେ, କେତେକ ଲୋକ ପାର୍ବତୀଙ୍କୁ ଏହା ମଧ୍ୟ ଶୁଣାଇ ଦେଲେ କି - ବୁଢ଼ାଟାକୁ ମରିବାକୁ ଦେ । କାହିଁକି ଏହାପାଇଁ କାନ୍ଦୁଛୁ ? ଆହୁରି ମଧ୍ୟ କେହି କିଛି କହିଲେ । ମର୍ଯ୍ୟାଦାଭଙ୍ଗ ହେବା ଭୟରୁ ସେହି ଶବ୍ଦଗୁଡ଼ାକ ଲେଖାଯାଉନାହିଁ । କିଛି ଦୟାଳୁ ସଚ୍ଚରିତ୍ର ପୁରୁଷ ଥିଲେ, ସେମାନେ କରୁଣାବଶ ହୋଇ ଯୁବତୀଙ୍କର ପତିଙ୍କୁ ଖାତରୁ ବାହାର କରିବାକୁ ଇଚ୍ଛା କଲେ । କିନ୍ତୁ ପାର୍ବତୀଙ୍କ କଥା ଶୁଣି ସେମାନେ ମଧ୍ୟ ଅଟକି ଗଲେ । ସେମାନେ ଭାବିଲେ କି ଆମେ ଗଙ୍ଗାରେ ଗାଧୋଇ କରି ଆସିଛୁଁ ତ କ'ଣ ହେଲା ? ପାପୀ ହିଁ ତ ଅଟୁଁ । ହୋମ କରୁ କରୁ ଯେପରି ହାତ ଜଳି ନ ଯାଏ । ବୁଢ଼ାକୁ ବାହାର କରିବାକୁ ଯାଇ ଏହି ସ୍ତ୍ରୀର କଥାନୁସାରେ ଆମେ ଯଦି ନିଜେ ଭସ୍ମ ହୋଇ ଯିବା ?

ସୁତରାଂ, କାହାରି ସାହସ ହେଲା ନାହିଁ । ଶହ ଶହ ଆସିଲେ, ଶହ ଶହ ପଗ୍ରିଲେ ଆଉ ଗ୍ରଲିଗଲେ । ସଂଧ୍ୟା ହୋଇ ଆସିଲା । ଶିବ କହିଲେ - 'ପାର୍ବତୀ ! ଦେଖିଲ, ଗଂଗାରେ ଗାଧୋଇବା ବାଲା କେହି ଆସିଲା ?'

କିଛି ସମୟ ପରେ ଜଣେ ଯୁବକ ହାତରେ ଲୋଟାଟିଏ ଧରି 'ହର-ହର ଉଚ୍ଚାରଣ କରି ବାହାରିଲା । ପାର୍ବତୀ ମଧ୍ୟ ତାକୁ ସେହି କଥା କହିଲେ । ଯୁବକରଂ ହୃଦୟ କରୁଣାରେ ବିଗଳିତ ହୋଇଗଲା । ସେ ଶିବଙ୍କୁ ଖାତରୁ ବାହାର କରିବା ପାଇଁ ପ୍ରସ୍ତୁତ ହେଲା । ପାର୍ବତୀ ତାକୁ ଅଟକାଇ କହିଲେ 'ଭାଇ ! ତୁମେ ଯଦି ସଂପୂର୍ଣ୍ଣ ନିଷ୍ପାପ ନ ହୋଇଥିବ, ତାହେଲେ ମୋ ପତିଙ୍କୁ ସ୍ପର୍ଶ କରିବା କ୍ଷଣି ଜଳି ଯିବ ।' ସେ ସେହି କ୍ଷଣି ବିନା ସଂକୋଚରେ ଦୃଢ଼ ନିଶ୍ଚୟପୂର୍ବକ ପାର୍ବତୀଙ୍କୁ କହିଲା - 'ମାତା ! ନିଷ୍ପାପ ହେବାରେ ତୋତେ କାହିଁକି ସନ୍ଦେହ ହେଉଛି ? ଦେଖୁ ନାହୁଁ, ମୁଁ ଏବେ ଗଂଗାରୁ ଗାଧୋଇ ସାରି ଆସିଛି ? ଗଙ୍ଗାରେ ବୁଡ଼ ପକାଇ ସାରିବା ପରେ ଭଲା କେବେ ପାପ ରହେ ? ତୋ ପତିକୁ ବାହାର କରୁଛି ।' ଯୁବକଟି ଡେଇଁ ପଡ଼ି ବୁଢ଼ାକୁ ଉପରକୁ ଉଠାଇ ନେଲା । ଶିବ-ପାର୍ବତୀ ତାକୁ ଅଧିକାରୀ ଭାବି ନିଜର ପ୍ରକୃତ ରୂପ ପ୍ରକଟ କରି ଦର୍ଶନ ଦେଇ କୃତାର୍ଥ କଲେ । ଶିବ ପାର୍ବତୀଙ୍କୁ କହିଲେ - 'ଏତେ ଲୋକଙ୍କ ମଧ୍ୟରୁ ଏଇ ଜଣକ ହିଁ ପ୍ରକୃତରେ ଗଙ୍ଗାରେ ସ୍ନାନ କରିଛି । ଏଇ ଦୃଷ୍ଟାନ୍ତ ଅନୁସାରେ ଯେଉଁ ଲୋକେ ବିନା ଶ୍ରଦ୍ଧା ଓ ବିଶ୍ୱାସରେ କେବଳ ଦମ୍ଭପ୍ରଦର୍ଶନ ନିମିତ୍ତ ନାମଗ୍ରହଣ କରନ୍ତି, ସେମାନଙ୍କୁ ପ୍ରକୃତ ଫଳ ମିଳେ ନାହିଁ, କିନ୍ତୁ ଏହାର ଉଦ୍ଦେଶ୍ୟ ନୁହେଁ ଯେ ନାମଗ୍ରହଣ ବୃଥା ଯାଏ ।

## ନାମର ଫଳ ଅବଶ୍ୟ ହୁଏ -

କିନ୍ତୁ ଯେପରି ହେବା କଥା ସେପରି ହୁଏ ନାହିଁ । ଦମ୍ଭପାଇଁ ନାମ ନେବା ବାଲା ମଧ୍ୟ ସଂସାରରେ ପୂଜା ପାଆନ୍ତି । ସେମାନଙ୍କ ପାପସମୂହର ବିନାଶ ମଧ୍ୟ ହୁଏ; କିନ୍ତୁ ଅନନ୍ତ ଜନ୍ମର ସଂଚିତ ଓ ଏବେ ନିରନ୍ତର ହେଉଥିବା ଅନନ୍ତ ପାପ ଶ୍ରଦ୍ଧାରହିତ ନାମଦ୍ୱାରା ପୂରାପୂରି ନଷ୍ଟ ହୋଇ ପାରନ୍ତି ନାହିଁ । ନାମ ଦ୍ୱାରା ପୂର୍ଣ୍ଣ ଫଳ ପ୍ରାପ୍ତ ନ ହେବାରେ ଶ୍ରଦ୍ଧାବ୍ୟତୀତ ଆଉ ଏକ ପ୍ରଧାନ କାରଣ ଅଛି -

## ସାଧକର ସକାମ ଭାବ !

ଆମେ ବହୁ ମୂଲ୍ୟବାନ୍ ବସ୍ତୁକୁ ବହୁତ ଶସ୍ତା ଦାମରେ ବିକି ଦେଉ । ଶିରରେ ସାଧାରଣ ବ୍ୟଥା ହେଲେ ତାକୁ ନଷ୍ଟ କରିବା ପାଇଁ 'ରାମନାମ' କହୁ । ଶହେ-ପଚ୍ଚଶ ଟଙ୍କାର ରୋଜଗାରପାଇଁ ରାମ-ନାମ ନେଉ । ସ୍ତ୍ରୀ-ପିଲାଙ୍କ ଆରୋଗ୍ୟ ପାଇଁ ରାମ-ନାମ ନେଉ । ସମ୍ମାନ-ବଡ଼ିମା ପାଇବା ପାଇଁ ରାମ-ନାମ କହୁ । ସନ୍ତାନ-ସୁଖ ନିମିତ୍ତ ରାମ-ନାମ କହୁ । ଫଳତଃ ଆମେ ରାମନାମ ନେଉଥିଲେ ମଧ୍ୟ କିଛି ଅର୍ଜନ କରିବା ସଙ୍ଗେ ସଙ୍ଗେ ତାହାକୁ ହରାଉଥିବା ମୂର୍ଖ ଭଳି ଯଥା-ତଥା ରହିଯାଉଛୁ । ଗ୍ଲୁଣୀରେ ଯେତେ ପାଣି ପୂରାଉଥାଅ, ସବୁ ବାହାରି ଯିବ । ଆମ ଅନ୍ତଃକରଣ ମଧ୍ୟ କାମନାସମୂହର ଅନନ୍ତ ଛିଦ୍ରଦ୍ୱାରା ଗ୍ଲୁଣୀ ହୋଇ ଯାଉଛି । ଏଥିରେ କିଛି ବି ରହେ ନାହିଁ । ରାମ-ନାମର ଫଳ ହେବ କିପରି ? ତୃଷା ଲାଗିରହିଛି । ଦୁନିଆରେ ସୁଖର ପିପାସା କାହାର ନାହିଁ ? ପବିତ୍ର ଜଳର ଝରଣା ଝରୁଛି । ରାମ-ନାମର ଝରଣା ସର୍ବଦା ଅବାଧିତ ରୂପରେ ବହୁଛି । କିନ୍ତୁ ଆମେ ଅଭାଗା ସେହି ଝରଣା ଆଗରେ ଅଞ୍ଜଳି ବାନ୍ଧି ଜଳ ଗ୍ରହଣ କରୁ ନାହୁଁ । ଆମେ ତା ଆଗରେ ରଖୁଛୁ, ହଜାର ହଜାର ଛିଦ୍ରଯୁକ୍ତ ଗ୍ଲୁଣୀ; ଯେଉଁଥିରେ କି କେବେ ହେଲେ ପାଣି ରହେ ନାହିଁ । ତାହା ଆମର ତୃଷାକୁ କେବେ ମେଣ୍ଟାଏ ନାହିଁ । ସକାମ ଭାବରେ ନିଆଯାଉଥିବା ନାମଦ୍ୱାରା ମଧ୍ୟ ନାମର ପ୍ରକୃତ ଫଳ-ଆତ୍ୟନ୍ତିକ ସୁଖରୁ ଆମେ ଏହିପରି ବଂଚିତ ରହିଯାଉ । ପ୍ରଥମରେ କେହି ତ ଭଗବନ୍ନାମ ନିଏ ନାହିଁ, ଯଦି କେହି ନିଏ ତାହେଲେ ତାହା ସକାମଭାବରେ ଧନ-ସନ୍ତାନ ପାଇଁ ଏବଂ ମାନ-ବଡ଼ାଇର ବୃଦ୍ଧିପାଇଁ ନେଇ ଥାଏ । ନିୟମାନୁସାରେ ଫଳରେ ଯଥାସ୍ଥାନ ହିଁ ରହିବାକୁ ପଡ଼େ । କିନ୍ତୁ ନାମର ମହିମା ଅପାର ଅଟେ । ଏପ୍ରକାର ନିଆ ଯାଉଥିବା ନାମରୁ ମଧ୍ୟ ଫଳ ତ ନିଶ୍ଚିତ ମିଳେ । ସକାମ କର୍ମର ସିଦ୍ଧି ମଧ୍ୟ ହୁଏ ଓ ଭବିଷ୍ୟତରେ ଭଗବଭକ୍ତି ବି ମିଳେ । ଯେବେ ଏହି ପଂକ୍ତିଗୁଡିକର କ୍ଷୁଦ୍ର ଲେଖକ ସକାମ ଭାବରେ ନାମ-ଜପ କରି ଆସୁଥିଲା ତେବେ କେତେ ଥର ତା'ର ଏଭଳି ବିପତ୍ତିମାନ ଟଳି ଯାଇଛି, ଯାହା ଟଳିବାର କୌଣସି ଆଶା ନଥିଲା । କେବଳ ସେଇ ବିପତ୍ତିମାନ ଟଳି ନାହିଁ । ତାହାର ଆହୁରି ବି ଫଳ ହେଲା । ନାମରେ ରୁଚି ବଢ଼ିଲା ଆଉ ଭବିଷ୍ୟତରେ ନିଷ୍କାମଭାବ ମଧ୍ୟ ହୋଇଗଲା । ଭଗବନ୍ନାମ ନେବାର ଅନ୍ତିମ ପରିଣାମ ହେଉଛି -

ଭଗବାନଙ୍କ ଠାରେ ଏକାନ୍ତ ପ୍ରେମ ହୋଇଯିବା । ଏକାନ୍ତ ପ୍ରେମ ହେବା ପରେ ପ୍ରେମମୟଙ୍କୁ ପାଇବାରେ ଟିକିଏ ହେଲେ ବିଳମ୍ବ ହୁଏ ନାହିଁ, ଯେପରି ଧ୍ରୁବଙ୍କୁ ଓ ବିଭୀଷଣଙ୍କୁ ରାଜ୍ୟପ୍ରାପ୍ତି ହେଲା ଓ ଭଗବତ୍‌ପ୍ରେମ ମଧ୍ୟ । ଏଇଥିପାଇଁ ଶାସ୍ତ୍ରମାନଙ୍କରେ ଯେପରି ଇଚ୍ଛା ସେପରି ଭଗବନ୍ନାମ ନେଉଥିବା ଲୋକଙ୍କୁ ମଧ୍ୟ ଖୁବ୍ ଉତ୍ତମ କୁହାଯାଇଛି । ଭଗବାନ୍ ଗୀତାରେ ଏଇଥିପାଇଁ ଅର୍ଥାର୍ଥୀ ଭକ୍ତଙ୍କୁ ମଧ୍ୟ ଉଦାର ଓ ପୁଣ୍ୟାତ୍ମା କହିଛନ୍ତି । ଆଉ ଶେଷରେ **'ମଦ୍ଭକ୍ତା ଯାନ୍ତି ମାମପି'** କହିକରି ଯେପରି ଇଚ୍ଛା ସେପରି ଭଗବଦ୍ ଭକ୍ତି କରୁଥିବା ଲୋକଙ୍କୁ ମଧ୍ୟ ନିଜର ପ୍ରାପ୍ତି ହେବା କହିଛନ୍ତି । କାରଣ ସକାମଭାବରେ ଅନ୍ୟ ସବୁର ଆଶା ଛାଡି, ଅନ୍ୟ ସବୁର ଆଶ୍ରୟ ତ୍ୟାଗକରି କେବଳ ଭଗବାନଙ୍କ ଭକ୍ତିପରାୟଣ ହେବା ମଧ୍ୟ ଖୁବ୍ ବଡ ପୁଣ୍ୟର ଫଳ ଅଟେ । ଅତଏବ ସକାମଭାବରେ ଭଗବାନଙ୍କ ନାମ ଗ୍ରହଣ କରୁଥିବା ଲୋକେ ମଧ୍ୟ ବଡ଼ ପୂଜ୍ୟ ଓ ମାନ୍ୟ ଅଟନ୍ତି; କିନ୍ତୁ ସେମାନଙ୍କୁ ସକାମଭାବର ପ୍ରତିବନ୍ଧକତା ହେତୁ ନାମର ବାସ୍ତବିକ ଫଳ ନାମୀର ପ୍ରେମ ପ୍ରାପ୍ତିରେ ଅଥବା ସ୍ୱୟଂ ନାମୀର ପ୍ରାପ୍ତିରେ ବିଳମ୍ବ ଅବଶ୍ୟ ହୋଇଯାଏ । ଏହାଦ୍ୱାରା ସିଦ୍ଧ ହୋଇଗଲା କି ନାମରୁ ଫଳ ଅବଶ୍ୟ ହୁଏ, କିନ୍ତୁ ଅଶ୍ରଦ୍ଧା, ଅବିଶ୍ୱାସ ଓ କାମନା ହେତୁ ତାହାର ପ୍ରକୃତ ଫଳପ୍ରାପ୍ତିରେ ବିଳମ୍ବ ହୋଇଯାଏ । ଯଦି ସାଧକ ନିଜର ଏହି ଦୋଷରୁ ହେଉଥିବା ବିଳମ୍ବର ଦୋଷକୁ ନାମଉପରେ ଲଗାଇ ତାକୁ ଅର୍ଥବାଦ କହେ ତେବେ ଏହା ମଧ୍ୟ ତାର ଅପରାଧ ଅଟେ ।

## ନାମର ଦଶ ଅପରାଧ

କୁହାଯାଇଛି - (୧) ସତ୍ ପୁରୁଷଙ୍କ ନିନ୍ଦା (୨) ନାମସମୂହରେ ଭେଦଭାବ (୩) ଗୁରୁଙ୍କ ଅପମାନ (୪) ଶାସ୍ତ୍ରନିନ୍ଦା (୫) ହରିନାମରେ ଅର୍ଥବାଦ (କେବଳ ସ୍ତୁତି ମାତ୍ର ବୋଲି କଳ୍ପନା) (୬) ନାମର ଆଶ୍ରୟ ନେଇ ପାପ କରିବା (୭) ଧର୍ମ, ବ୍ରତ, ଦାନ ଓ ଯଜ୍ଞାଦି ସହ ନାମର ତୁଳନା (୮) ଅଶ୍ରଦ୍ଧାଳୁ, ହରି-ବିମୁଖ ଏବଂ ଶୁଣିବାକୁ ଚାହୁଁ ନଥିବା ଲୋକଙ୍କୁ ନାମର ଉପଦେଶ କରିବା (୯) ନାମର ମାହାତ୍ମ୍ୟ ଶୁଣି ମଧ୍ୟ ସେଥିରେ ପ୍ରେମ ନ କରିବା ଓ (୧୦) 'ମୁଁ '- 'ମୋର' ତଥା ଭୋଗାଦି ବିଷୟସମୂହରେ ଲାଗି ରହିବା ।

ଯଦି ପ୍ରମାଦବଶତଃ ଏଗୁଡ଼ିକମଧ୍ୟରୁ କୌଣସିପ୍ରକାର ନାମାପରାଧ ହୋଇଯାଏ, ତାହା ହେଲେ ସେଥିରୁ ମୁକ୍ତ ହୋଇ ଶୁଦ୍ଧ ହେବାର ଉପାୟ ମଧ୍ୟ ପୁଣି ନାମ-କୀର୍ତ୍ତନ ହିଁ ଅଟେ । ଭୂଲ ପାଇଁ ପଶ୍ଚାତ୍ତାପ କରିବା ସହ ନାମ କୀର୍ତ୍ତନ କରିବା ଦ୍ୱାରା ନାମାପରାଧ ଦୂର ହୋଇଯାଏ । ପଦ୍ମପୁରାଣରେ ଉକ୍ତି ଅଟେ -

**ନାମାପରାଧଯୁକ୍ତାନାଂ ନାମାନ୍ୟେବ ହରନ୍ତ୍ୟଘମ୍ ।**
**ଅବିଶ୍ରାନ୍ତପ୍ରଯୁକ୍ତାନି ତାନ୍ୟେବାର୍ଥକରାଣି ଚ ।।**

ନାମାପରାଧୀ ଲୋକଙ୍କ ପାପସମୂହକୁ ନାମହିଁ ହରଣ କରେ । ନିରନ୍ତର ନାମ କୀର୍ତ୍ତନଦ୍ୱାରା ସମସ୍ତ ମନୋରଥ ସିଦ୍ଧ ହୁଏ । ନାମର ପ୍ରକୃତ ମାହାତ୍ମ୍ୟକୁ ବୁଝି ଯେତେଦୂର ହୋଇପାରେ, ନାମ ନେବାରେ କଦାପି ଇହଲୋକ ଓ ପରଲୋକର ଭୋଗମାନଙ୍କୁ ଟିକିଏ ବି କାମନା କରିବା ଉଚିତ ନୁହେଁ । ଯଦ୍ୟପି ଉପରିଲିଖିତ ବିଷୟ ଅନୁସାରେ ନାମଜପ ଦ୍ୱାରା କାମନାସିଦ୍ଧି ବ୍ୟତୀତ ଅନ୍ତଃକରଣର ଶୁଦ୍ଧି ହୋଇ ଭଗବଦ୍‌ଭକ୍ତି ରୂପକ ବିଶେଷ ଫଳ ମଧ୍ୟ ମିଳିଥାଏ, କିନ୍ତୁ ନିୟମ ଏହି ଯେ ଯେପରି କାମନା ହୋଇଥିବ - ସାଙ୍ଗୋପାଙ୍ଗ କର୍ମ ହେବା ଦ୍ୱାରା ସେପରି ଫଳ ହିଁ ମିଳି ଯିବ । ଯେଉଁ ଲୋକେ ଭଗବନ୍ନାମକୁ ସାଧାରଣ କଥାରେ ପ୍ରୟୋଗ କରନ୍ତି, ସେମାନେ ବାସ୍ତବରେ ଭଗବନ୍ନାମର ଅପାର ମହିମା ବିଷୟରେ ସର୍ବଥା ଅନଭିଜ୍ଞ ଅଥବା ତା ଉପରେ ସେମାନଙ୍କର ବିଶ୍ୱାସ ନାହିଁ । ଯିଏ ରତ୍ନମୂଲ୍ୟ ସମ୍ବନ୍ଧରେ ଅନଭିଜ୍ଞ ହେବ, ସିଏ ହିଁ ତାକୁ କାଚମୂଲ୍ୟରେ ବିକିବ ।

## ଭଗବନ୍ନାମର ମୂଲ୍ୟ ଉପରେ ଗୋଟିଏ ଦୃଷ୍ଟାନ୍ତ

ଜଣେ ଶ୍ରଦ୍ଧାଳୁ ଭକ୍ତ ପ୍ରତିଦିନ ଗାଁ ବାହାରେ ଥିବା ଜଣେ ମହାତ୍ମାଙ୍କ ନିକଟକୁ ଯା'ଆସ କରୁଥିଲା । ମହାତ୍ମାଙ୍କ ସେବା କରୁ କରୁ ତା'ର ବହୁଦିନ ବିତି ଗଲାରୁ ଦିନେ ମହାତ୍ମା ତାକୁ ଅଧିକାରୀ ଭାବି କହିଲେ - 'ବତ୍ସ ! ତୋର ମତି ଭଗବାନଙ୍କ ଠାରେ ଅଛି, ତୁ ଶ୍ରଦ୍ଧାଳୁ, ଗୁରୁସେବାପରାୟଣ, କୁତାର୍କିକ ନୋହୁ, ସାଧନରେ ଅଳସୁଆ ନୋହୁ, ଶାସ୍ତ୍ରବଚନ ପ୍ରତି ବିଶ୍ୱାସୀ, କାହାରି ମନ୍ଦ ଚାହୁଁ ନାହୁଁ, କାହାରିକୁ ଘୃଣା ଓ ଦ୍ୱେଷ କରୁ ନାହୁଁ, ତୁ ସରଳଚିତ୍ତ, କାମ, କ୍ରୋଧ, ଲୋଭକୁ ତୁ ଭୟ କରୁଛୁ, ତୁ ସନ୍ତମାନଙ୍କର

ଉପାସକ ଓ ଜିଜ୍ଞାସୁ ଅଟୁ ; ଏଣୁ ତୋତେ ଏପରି ଏକ ଗୋପନୀୟ ମନ୍ତ୍ର ଦେଉଛି, ଯାହା ବହୁତ କମ୍ ଲୋକଙ୍କୁ ଜଣା ଅଛି । ଏହି ମନ୍ତ୍ର ପରମ ଗୁପ୍ତ ଓ ଅମୂଲ୍ୟ, କାହାରିକୁ କହିବୁ ନାହିଁ । ଏପରି କହି ମହାତ୍ମା ତା'କାନରେ ଧୀରେ କହିଦେଲେ 'ରାମ' । ଶ୍ରଦ୍ଧାଳୁ ଭକ୍ତଟି ମନ୍ତ୍ରରାଜ 'ରାମ' ଜପିବାରେ ଲାଗିଲା । ସେ ଦିନେ ଗଙ୍ଗା-ସ୍ନାନ କରି ଫେରୁଥିଲା; ତାର ଧ୍ୟାନ ହଠାତ୍ ସେହି ଲୋକଙ୍କ ଆଡ଼କୁ ଚାଲିଗଲା ଯେଉଁମାନେ ହଜାର ହଜାର ସଂଖ୍ୟାରେ ତା'ରି ଭଳି ଗଙ୍ଗାସ୍ନାନ ସାରି ଜୋର-ଜୋରରେ 'ରାମ-ରାମ' କହି ଚାଲି ଆସୁଥିଲେ । ସେ ପ୍ରତିଦିନ ତାହା ହିଁ ଶୁଣୁଥିଲା । କିନ୍ତୁ କେବେ ବି ସେ ଆଡ଼କୁ ତା'ର ଧ୍ୟାନ ଯାଇ ନ ଥିଲା । ଆଜି ଧ୍ୟାନ ଯିବା କ୍ଷଣି ତା'ମନରେ ଏକ ବିଚାର ଆସିଲା କି ମହାତ୍ମା ତ ରାମମନ୍ତ୍ରକୁ ବଡ ଗୁପ୍ତ ବୋଲି କହିଥିଲେ; ମୋତେ ମଧ୍ୟ କହିଦେଇଥିଲେ ଯେ - କାହାରିକୁ କହିବୁ ନାହିଁ ; କିନ୍ତୁ ଏହାକୁ ତ ସମସ୍ତେ ଜାଣନ୍ତି । ହଜାର, ହଜାର ମନୁଷ୍ୟ 'ରାମ-ରାମ' ଧ୍ୱନି କରି କରି ଯାଉଛନ୍ତି । ତା'ମନରେ କିଛିଟା ସଂଶୟ ଉପୁଜିଲା । ସେ ନିଜ ଘରକୁ ନ ଯାଇ ସିଧା ଗୁରୁଙ୍କ ଘରକୁ ଗଲା । ମହାତ୍ମା କହିଲେ 'ବତ୍ସ ! ଆଜି ଏତେବେଳ କିପରି ଆସିଲ ?' ସେ ନିଜର ସଂଶୟ ଶୁଣେଇ କହିଲା 'ପ୍ରଭୋ ! ମୋ ବୁଝିବାରେ ଭ୍ରମ ହୋଇଛି ଅବା ଏହାର ଆଉ କୌଣସି ଅଭିପ୍ରାୟ ଅଛି । ଆପଣଙ୍କ ଦିବ୍ୟବାଣୀ ଦ୍ୱାରା ଦୟା କରି ମୋର ସନ୍ଦେହ ଦୂର କରନ୍ତୁ । ମହାତ୍ମା ତା' ମନର କଥା ଜାଣି ନେଲେ ଓ କହିଲେ 'ଭାଇ ! ତୋ ପ୍ରଶ୍ନର ଉତ୍ତର ପରେ ଦିଆଯିବ । ପ୍ରଥମେ ତୁ ମୋର ଗୋଟିଏ କାମ କର !' ମହାତ୍ମା ଝୁଲୀଭିତରୁ ଚକ୍ ଚକ୍ ଦିଶୁଥିବା କାଚ ପରି ଗୋଟିଏ ଗୋଲି ବାହାର କଲେ ଓ ତାକୁ ଭକ୍ତହାତରେ ଦେଇ କହିଲେ -'ବଜାରକୁ ଯାଇ ଏହାର ମୂଲ୍ୟ ଠିକ୍ କରାଇ ଫେରି ଆସିବୁ । ବିକିବୁ ନାହିଁ, କେବଳ ମୂଲ୍ୟ ଜାଣିବାର ଅଛି । ସାବଧାନ ! ଦର କଷିବାରେ ଯେପରି ଭୂଲ ହୋଇ ନ ଯାଏ ।' ଭକ୍ତ ଶ୍ରଦ୍ଧାଳୁ ଥିଲା, ଯଦି ଆଜିକାଲିକା ପରି ହୋଇ ଥାଆନ୍ତା, ତାହେଲେ ପ୍ରଥମରୁ ଗୁରୁମହାଶୟଙ୍କୁ ଆଡ଼ହାତରେ ଆଡ଼େଇ ଦେଇ ଥାଆନ୍ତା ଆଉ କହିଥାଆନ୍ତା କି ମୁଁ ତୁମ କାଚଖଣ୍ଡର ମୂଲ୍ୟ ଠିକେଇବାକୁ ଆସି ନାହିଁ, ତୁମର ମୁଁ ଗୋଲାମ ନୁହେଁ । ପ୍ରଥମେ ମୋ ପ୍ରଶ୍ନର ଉତ୍ତର ଦିଅ, ନହେଲେ ମୋ ସହ କପଟାଚରଣ ଅପରାଧରେ ତୁମ ଉପରେ କୋର୍ଟରେ ନାଲିସ୍

କରାଯିବ ।' ସେ ସମୟ ଭିନ୍ନ ଥିଲା । ଭକ୍ତ ନିଜର ପ୍ରଶ୍ନକୁ ସେଇଠି ଛାଡ଼ି ଗୁରୁଙ୍କ କାମନିମିତ୍ତ ବଜାରକୁ ଗଲା । ସର୍ବପ୍ରଥମେ ଶାଗ ବିକୁଥିବା ଜଣେ ସ୍ତ୍ରୀଲୋକ ମିଳିଲା । ଭକ୍ତ ଗୁରୁଙ୍କ ଜିନିଷଟିକୁ ତାକୁ ଦେଖାଇ କହିଲା - 'ଏହାର ମୂଲ୍ୟ କ'ଣ ଦେବୁ ?' ସେଇ ସ୍ତ୍ରୀଲୋକଟି ପଥରର ଜ୍ୟୋତି ଦେଖି ଭାବିଲା - ଛୁଆଙ୍କ ଖେଳିବା ପାଇଁ କାଚର ସୁନ୍ଦର ଗୁଲୀଟିଏ । ବଜାରରେ କୌଣସିଠି ଏପରି ଜିନିଷ ମିଳୁନାହିଁ । ସେ କହିଲା - 'ସେରେ-ଦୁଇ-ସେର ଆଳୁ ଓ ବାଇଗଣ ନେଇ ଦେଇଦିଅ ।' ସେ ଆଗେଇ ଗଲା; ଗୋଟିଏ ବଣିଆଦୋକାନ ପଡିଲା; ସେଠାରେ ଅଟକିଗଲା । ବଣିଆକୁ ଗୁଲୀ ଦେଖାଇ ପଚ୍ଚରିଲା - 'ଭାଇ ! ଏହାର ମୂଲ୍ୟ କ'ଣ ଦେବ ? ବଣିଆ ତାକୁ ହାତରେ ନେଇ ଦେଖିଲା ଓ ଭଲ ରତ୍ନ (ନକଲି ହୀରା) ଭାବି ଶହେ ଟଙ୍କା ଦେବାକୁ କହିଲା । ଭକ୍ତର ଆଗ୍ରହ ବଢ଼ିଲା, ସେ ଆହୁରି ଆଗକୁ ଗଲା, ଜଣେ ମହାଜନର ଘର ପଡ଼ିଲା । ମହାଜନ ଜଣକ ଗୁଲୀକୁ ଦେଖି ମନରେ ବିଚ୍ଚରିଲା - ଏତେ ବଡ଼ ଓ ଏପରି ଭଲ ହୀରା ଦୁନିଆଁରେ କେଉଁଠୁ ମିଳିବ ? ଏ ତ ପୋଖରାଜ, କିନ୍ତୁ ହୀରା ପରି ମନେ ହେଉଛି । ବଡ଼ ଲୋକଙ୍କ ଘରେ ନକଲିକୁ ମଧ୍ୟ ଅସଲି ବୁଝାଯାଏ, ତହୁଁ ସେ ହଜାରେ ଟଙ୍କାରେ ମାଗିଲା । ଭକ୍ତ ଭାବିଲା - ଏହା କୌଣସି ମୂଲ୍ୟବାନ୍ ବସ୍ତୁ । ସେ ଆହୁରି ଆଗକୁ ଆଗେଇଲା ଓ ଜଣେ ହୀରା ବ୍ୟବସାୟୀ ଦୋକାନକୁ ଗଲା । ସେ ପରୀକ୍ଷା କଲା ପରେ ତାହା ହୀରା ବୋଲି ସେ ଜାଣିଲା, କିନ୍ତୁ ଏତେ ବଡ଼ ଓ ଏପ୍ରକାର ହୀରା ସେ କେବେ ଦେଖି ହିଁ ନଥିଲା; ଏଣୁ ତାର କିଛି ସନ୍ଦେହ ରହିଲା; ତଥାପି ସେ ଏକ ଲକ୍ଷ ଟଙ୍କାରେ ମାଗିଲା । ଭକ୍ତ 'ବିକିବ ନାହିଁ' କହି ସବୁଠୁଁ ବଡ଼ ଗୋଟିଏ ହୀରା ବ୍ୟବସାୟୀ ଦୋକାନକୁ ଗଲା । ଗୁରୁଙ୍କ ପାଖରୁ ଆସିଲାବେଳେ ହୀରା ବ୍ୟବସାୟୀଙ୍କ ପାଖକୁ ଯିବାକୁ ତାର ସାହସ ନ ଥିଲା । ସେ ନିଜେ ତାହାକୁ ସାଧାରଣ କାଚ ଭାବୁଥିଲା, କିନ୍ତୁ ଯେତେ-ଯେତେ ମୂଲ୍ୟ ବଢ଼ି ଚ୍ଚଲିଲା, ସେତେ ସେତେ ତାର ସାହସ ମଧ୍ୟ ବଢ଼ି ଚ୍ଚଲିଲା । ବଡ଼ ହୀରା ବେପାରୀ ହୀରା ଦେଖି କହିଲା - 'ଭାଇ ! ଏ ତ ଅମୂଲ୍ୟ, ଏ ଦେଶର ସମସ୍ତ ମଣି-ରତ୍ନକୁ ଯଦି ଏହାର ବିନିମୟରେ ଦିଆଯାଏ, ତେବେ ମଧ୍ୟ ତାହା ଏହାର ମୂଲ୍ୟସମକକ୍ଷ ହେବ ନାହିଁ । ଏହାକୁ ବିକ ନାହିଁ । ଏହାଶୁଣି ଭକ୍ତ ବିଚ୍ଚର କଲା ଯେ ବର୍ତ୍ତମାନ ତ ମୂଲ୍ୟର ସୀମା ହୋଇ ସାରିଲା ।

ସେ ମହାତ୍ମାଙ୍କ ପାଖକୁ ଫେରିଗଲା ଓ କହିଲା - 'ମହାରାଜ ! ଏହାର ମୂଲ୍ୟ କେହି ଠିକ୍ କରି ପାରିବ ନାହିଁ । ଏହା ତ ଅମୂଲ୍ୟ ବସ୍ତୁ । ଗୁରୁ ପଗ୍ଚରିଲେ - 'ତୁମକୁ ଏହା କିଏ ଜଣାଇଲା ? ଭକ୍ତ କହିଲା - 'ପ୍ରଭୁ ! ମୁଁ ଏଠାରୁ ବଜାରକୁ ଯାଇ ପ୍ରଥମେ ଏକ ଶାଗବିକାଳୁଣୀକୁ ପଗ୍ଚରିଲି, ସେରେ ଦୁଇ ସେର ଶାଗ ଦେବାକୁ ସେ ରାଜି ହେଲା, ବଣିଆ ଶହେ ଟଙ୍କା କହିଲା, ମହାଜନ ହଜାରେ ଟଙ୍କା, ରତ୍ନବେପାରୀ ଏକ ଲକ୍ଷ ଆଉ ଶେଷରେ ସବୁଠୁଁ ବଡ଼ ହୀରା ବ୍ୟବସାୟୀ ଏହାକୁ ଅମୂଲ୍ୟ ବୋଲି ଜଣାଇ କହିଲା 'ଯଦି ଦେଶର ସମସ୍ତ ମଣି-ରତ୍ନ ଏହା ବଦଳରେ ଦିଆଯାଏ, ତାହେଲେ ମଧ୍ୟ ଏହାର ମୂଲ୍ୟ ସଂପୂର୍ଣ୍ଣ ହେବ ନାହିଁ ।' ମହାତ୍ମା ତା' ଠାରୁ ରତ୍ନଟି ନେଇ ନିଜ ମୁଣିରେ ରଖିଦେଲେ । ଭକ୍ତଟି କହିଲା - 'ମହାରାଜ ! ବର୍ତ୍ତମାନ ମୋ ଶଙ୍କା ନିବାରଣ କରନ୍ତୁ । ମହାତ୍ମା କହିଲେ - 'ଭାଇ ! ମୁଁ ତ ତୋର ଶଙ୍କା ନିବାରଣ ପାଇଁ ଦୃଷ୍ଟାନ୍ତ ସହିତ ଉପଦେଶ ଦେଇ ସାରିଛି । ତୁ ଏବେସୁଦ୍ଧା ବୁଝିଲୁ ନାହିଁ, ଏଣୁ ପୁଣି ବୁଝାଉଛି । ଏହି ରତ୍ନକୁ ମୂଲେଇବାରେ ତୋର ଶଙ୍କା ଦୂର ହେବା ଉଚିତ ଥିଲା । ରତ୍ନଟି ଅମୂଲ୍ୟ, କିନ୍ତୁ ତାର ପ୍ରକୃତ ପରିଚୟ କେବଳ ସବୁଠୁଁ ବଡ଼ ରତ୍ନ ବ୍ୟବସାୟୀ ହିଁ ପାଇଲା, ଅନ୍ୟ ସମସ୍ତେ ଚିହ୍ନି ପାରିଲେ ନାହିଁ । ଯଦି ମୁଁ ତୋତେ ବିକି ଦେବା ପାଇଁ ଆଜ୍ଞା ଦେଇ ଦେଇଥାଆନ୍ତି ତାହେଲେ ତୁ ତାକୁ ଦୁଇ ସେର ବଦଳରେ ପାଞ୍ଚ-ସାତ ସେର ଶାଗ ମୂଲ୍ୟରେ ବିକି ଦେଇ ଥାଆନ୍ତୁ । ଆଗକୁ ଯାଇ ନଥାନ୍ତୁ । ଅମୂଲ୍ୟ ବସ୍ତୁ କଉଡ଼ି ଦରରେ ଗ୍ଚଲିଯାଇ ଥାଆନ୍ତା । କେତେ ବଡ଼ କ୍ଷତି ହୋଇ ଥାଆନ୍ତା ? ଏହାକୁ ଚିହ୍ନିବା ଶକ୍ତି ସମସ୍ତଙ୍କର ନାହିଁ କି ଏହାର ମୂଲ୍ୟ ସମସ୍ତଙ୍କୁ ଜଣା ନାହିଁ । ଜିନିଷଟିଏ ହାତରେ ଥିଲେ ମଧ୍ୟ ଯେପର୍ଯ୍ୟନ୍ତ ତାହାର ପରିଚୟ ନ ମିଳେ, ସେପର୍ଯ୍ୟନ୍ତ ତାର ପ୍ରକୃତ ଗୁଣ ଗୁପ୍ତ ହିଁ ରହିଥାଏ । ସେହିପରି ରାମନାମର ପ୍ରକୃତ ମହତ୍ତ୍ୱକୁ ମଧ୍ୟ ବହୁତ କମ୍ ଲୋକ ଜାଣନ୍ତି । ଯେଉଁମାନେ ରାମ-ନାମରେ ବ୍ୟବସାୟ କରନ୍ତି, ସେହି ଦୀନଗୁଡ଼ାକ ବଡ଼ ଦୟାର ପାତ୍ର; କାରଣ ସେମାନେ ଏହି ଅମୂଲ୍ୟ ଧନ ରାମ-ନାମକୁ କଉଡ଼ି ଦରରେ ବିକି ଦିଅନ୍ତି । ଏହାଦ୍ୱାରା ପରମ ମୂଲ୍ୟବାନ୍ ରତ୍ନକୁ ଦୁଇ ସେର ଶାଗ ବଦଳରେ ବିକି ଦେଉଥିବା ମୂର୍ଖ ପରି ସେମାନେ ସର୍ବଦା ଭକ୍ତି ଓ ପ୍ରେମରେ ଦରିଦ୍ର ହିଁ ରହନ୍ତି । ଭକ୍ତି

ଓ ପ୍ରେମ ବିନା ପରମାତ୍ମା ମିଳନ୍ତି ନାହିଁ ଓ ପରମାତ୍ମାଙ୍କ ପ୍ରାପ୍ତି ବିନା ଦୁଃଖସମୂହରୁ ମୁକ୍ତି ମିଳିପାରେ ନାହିଁ । ଦୁଃଖସମୂହର ଆତ୍ୟନ୍ତିକ ନିବୃତ୍ତି ପରମାତ୍ମାଙ୍କୁ ପାଇବାରେ ହିଁ ଅଛି ଓ ସେହି -

**- ପରମାତ୍ମାଙ୍କୁ ପାଇବାର ପରମ ସାଧନ ହେଉଛି ଶ୍ରୀଭଗବନ୍ନାମ -**

ଏଣୁ ଅନ୍ୟ କୌଣସି କାମରେ ଭଗବନ୍ନାମର ପ୍ରୟୋଗ କରିବା ଉଚିତ ନୁହେଁ । ଭଗବନ୍ନାମ କେବଳ ଭଗବନ୍ନାମପାଇଁ ନେବା ଉଚିତ । ଭଗବନ୍ନାମପାଇଁ ମଧ୍ୟ ନୁହେଁ, ତା' ପ୍ରେମପାଇଁ - ପ୍ରେମପାଇଁ ବି ନୁହେଁ, କିନ୍ତୁ ଏଇଥିପାଇଁ କି - ତାକୁ ନେବା ବିନା ରହି ହୁଏ ନାହିଁ । ମନର ବୃତ୍ତିଗୁଡିକ ଏପରି ହୋଇ ଯିବା ଉଚିତ କି ଯଦ୍‌ଦ୍ୱାରା ଭଜନ ବିନା ଗୋଟିଏ କ୍ଷଣ ବି ଶାନ୍ତି ନ ଲାଗେ । ଯେପରି ଶ୍ୱାସ ବନ୍ଦହେବା କ୍ଷଣି ଗଳା ରୁଦ୍ଧ ହୋଇଯାଏ - ପ୍ରାଣ ଅତ୍ୟନ୍ତ ବିକଳ ହୋଇ ଛଟପଟ ହେବାକୁ ଲାଗେ, ସେହିଭଳି ଭଜନରେ ଟିକିଏମାତ୍ର ଭୂଲ ହେବା ଦ୍ୱାରା, ମୁହୂର୍ତ୍ତକପାଇଁ ମଧ୍ୟ ଭଜନ ଛୁଟିଗଲେ ପ୍ରାଣ ଛଟପଟ ହେବାକୁ ଲାଗେ । ଏଣୁ ଭଗବାନ୍ ନାରଦ କହୁଛନ୍ତି -

**ଅବ୍ୟାବୃତଭଜନାତ୍ ।** (ଭକ୍ତିସୂତ୍ର ୩୬)

- ତୈଳଧାରାପରି ନିରନ୍ତର ଭଜନ କରିବା ଦ୍ୱାରା ହିଁ ପ୍ରେମର ପ୍ରାପ୍ତି ହୋଇଥାଏ । ଭଜନରେ ସର୍ବପ୍ରଥମେ ନାମର ଆବଶ୍ୟକତା ରହିଛି । ଯାହାର ଭଜନ କରିବାର ଅଛି, ସର୍ବପ୍ରଥମେ ତା'ର ନାଁ ଜାଣିବାକୁ ପଡ଼େ ଏଣୁ ନାମ ହିଁ ଭଜନର ମୂଳ ଅଟେ । ଏହି -

**- ନାମ-ଭଜନ ର କେତେକ ପ୍ରକାର -**

- ଅଛି - ଜପ, ସ୍ମରଣ ଓ କୀର୍ତ୍ତନ ! ଏଥିରେ ସର୍ବପ୍ରଥମେ ଜପର କଥା କୁହାଯାଇଛି । ପରମାତ୍ମାଙ୍କ ଯେଉଁ ନାମରେ ରୁଚି ହେବ, ଯାହା ନିଜ ମନକୁ ରୁଚିକର ହୋଇଥିବ, ସେହି ନାମକୁ ପରମାତ୍ମାଙ୍କ ଭାବନାରେ ବାରମ୍ବାର ଆବୃତ୍ତି କରିବାର ନାମ ଜପ । ଶାସ୍ତ୍ରମାନଙ୍କରେ ଜପର ବଡ଼ ମହିମା ଅଛି । ଜପକୁ ଯଜ୍ଞ ବୋଲି ଧରା ଯାଇଛି ଓ ଶ୍ରୀ ଗୀତାରେ ଭଗବାନଙ୍କ ଏହି ଉକ୍ତିରୁ - 'ଯଜ୍ଞାନାଂ ଜପଯଜ୍ଞୋଽସ୍ମି' (ଯଜ୍ଞମାନଙ୍କରେ ଜପଯଜ୍ଞ ମୁଁ ଅଟେ) ଜପର ମହତ୍ତ୍ୱ ବହୁତ ବଢ଼ି ଯାଇଛି । ଜପ ତିନିପ୍ରକାର - ସାଧାରଣ,

ଉପାଂଶୁ ଓ ମାନସ । ଏଗୁଡ଼ିକରେ ପୂର୍ବ-ପୂର୍ବଠାରୁ ଉତ୍ତର-ଉତ୍ତର ଦଶଗୁଣ ଅଧିକ ଫଳଦାୟକ । ଭଗବାନ୍ ମନୁ କହୁଛନ୍ତି -

**ବିଧିଯଜ୍ଞାଜ୍ଜପଯଜ୍ଞୋ ବିଶିଷ୍ଟୋ ଦଶଭିର୍ଗୁଣୈଃ ।**
**ଉପାଂଶୁଃ ସ୍ୟାଚ୍ଛତଗୁଣଃ ସାହସ୍ରୋ ମାନସଃ ସ୍ମୃତଃ ॥**

'ଦର୍ଶ-ପୌର୍ଣ୍ଣମାସାଦି ବିଧିଯଜ୍ଞମାନଙ୍କରୁ (ଏଠାରେ ମନୁ ମଧ୍ୟ ବିଧିଯଜ୍ଞମାନଙ୍କ ଠାରୁ ଜପଯଜ୍ଞକୁ ଉଚ୍ଚ ମାନି ନେଇଛନ୍ତି ) ସାଧାରଣ ଜପ ଦଶଗୁଣ ଶ୍ରେଷ୍ଠ, ଉପାଂଶୁ ଜପ ଶହେ ଗୁଣ ଶ୍ରେଷ୍ଠ ଓ ମାନସ ଜପ ହଜାରେ ଗୁଣ ଶ୍ରେଷ୍ଠ ।'

ଯେଉଁ ଫଳ ସାଧାରଣ ଜପର ହଜାରେ ମନ୍ତ୍ରଦ୍ୱାରା ହୋଇଥାଏ , ସେହି ଫଳ ଉପାଂଶୁ ଜପର ଶହେ ମନ୍ତ୍ରଦ୍ୱାରା ଓ ମାନସ ଜପର ଗୋଟିଏ ମନ୍ତ୍ରଦ୍ୱାରା ହୋଇଯାଏ । ଉଚ୍ଚ ସ୍ୱରରେ ହେଉଥିବା ଜପକୁ ସାଧାରଣ ଜପ କହନ୍ତି; (କିନ୍ତୁ ଏହା କୀର୍ତ୍ତନ ନୁହେଁ ।), ଯେଉଁଥିରେ ଜିଭ ଓ ଓଠ କମ୍ପିତ ହୁଏ; କିନ୍ତୁ ଶବ୍ଦ ଭିତରେ ହିଁ ରହିଥାଏ, ତାହା ଉପାଂଶୁ ଜପ ଏବଂ ଯେଉଁଥିରେ ନା ଜିଭକୁ ହଲାଇବାର ଆବଶ୍ୟକତା ଅଛି ନା ଓଠକୁ, ତାହା ମାନସ ଜପ ନାମରେ କଥିତ । ଉଚ୍ଚ ସ୍ୱର ଠାରୁ ଉପାଂଶୁ ଉତ୍ତମ ଏବଂ ଉପାଂଶୁଠାରୁ ମାନସିକ ଉତ୍ତମ । ଏହା ମନ୍ତ୍ରଜପର ବିଧି । ଯେକୌଣସି ଦେବତାର ଯେକୌଣସିପ୍ରକାର ମନ୍ତ୍ର ହେଉ ନା କାହିଁକି, ଏହି ବିଧି ସମସ୍ତଙ୍କ ପାଇଁ ଏକା ପରି । ଏହି ବିଧି ପ୍ରକୃତରେ ମନ୍ତ୍ରଦୃଷ୍ଟିରୁ ହୁଏ । ଭଗବନ୍ନାମ ମଧ୍ୟ ମନ୍ତ୍ର ଅଟେ । ଅତଏବ ଯେଉଁଠାରେ ମନ୍ତ୍ରର ଭାବନା ଅଛି, ସେଠାରେ ଏହି ବିଧିର ଆବଶ୍ୟକତା ଅଛି । ନାମଦୃଷ୍ଟିରେ ଏ କଥା ନାହିଁ, ସେଠି ଯେପରି ଜପିଲେ ବି ତାହା ସବୁ ପ୍ରକାରେ ମଙ୍ଗଳମୟ ହୁଏ, କୌଣସି ବିଧି-ନିଷେଧ ନଥାଏ । ଏହା ନାମର ଅଲୌକିକ ମହିମା । ଭଗବନ୍ନାମରେ ଶୁଦ୍ଧି-ଅଶୁଦ୍ଧିର କୌଣସି କଥା ନାହିଁ ।

**ଅପବିତ୍ରଃ ପବିତ୍ରୋ ବା ସର୍ବାବସ୍ଥାଂ ଗତୋଽପି ବା ।**
**ଯଃ ସ୍ମରେତ୍ ପୁଣ୍ଡରୀକାକ୍ଷଂ ସ ବାହ୍ୟାଭ୍ୟନ୍ତରଃ ଶୁଚିଃ ॥**

ଅପବିତ୍ର ହୁଅ, ପବିତ୍ର ହୁଅ, ଯେକୌଣସି ଅବସ୍ଥାରେ ଥାଅ ନା କାହିଁକି, ଭଗବାନ୍ ପୁଣ୍ଡରୀକାକ୍ଷଙ୍କୁ ସ୍ମରଣ କରିବା କ୍ଷଣି ବାହାରେ ଓ ଭିତରେ ଶୁଦ୍ଧି ହୋଇଯାଏ । ଜଳ-ମୃତ୍ତିକା ଦ୍ୱାରା କେବଳ ବାହାରର ଶୁଦ୍ଧି

ହୁଏ; କିନ୍ତୁ ଭଗବନ୍ନାମ ଅନ୍ତରର ମଳକୁ ମଧ୍ୟ ଅଶେଷଭାବେ ଧୋଇ ପକାଏ; ଏହାର କାହାରି ପାଇଁ କୌଣସି ଅବସ୍ଥାରେ କିଛି ବି ନିଷେଧ ନାହିଁ ।

**ପୁରୁଷ ନପୁଂସକ ନାରି ବା ଜୀଓ୍ୱ ଚରାଚର କୋଇ ।**
**ସର୍ବଭାଓ୍ୱ ଭଜ କପଟ ତଜି ମୋହି ପରମ ପ୍ରିୟ ସୋଇ ॥**

## କଳିସନ୍ତରଣୋପନିଷଦ୍ -

- ରେ-ନାମ-ଜପର ବିଧି ଓ ତା' ଫଳର ବଡ଼ ସୁନ୍ଦର ବର୍ଣ୍ଣନା ଅଛି । ପାଠକମାନଙ୍କ ଲାଭାର୍ଥେ ତାହାକୁ ଏଠାରେ ଉଦ୍ଧୃତ କରାଯାଇଛି ।

**ହରିଃ ଓଁ । ଦ୍ୱାପରାନ୍ତେ ନାରଦୋ ବ୍ରହ୍ମାଣଂ ଜଗାମ କଥଂ ଭଗବନ୍ ଗାଂ ପର୍ଯ୍ୟଟନ୍ କଳିଂ ସନ୍ତରେୟମିତି ॥୧॥**

ଦ୍ୱାପରର ସମାପ୍ତିସମୟରେ ନାରଦ ବ୍ରହ୍ମାଙ୍କ ପାଖକୁ ଯାଇ ପଚାରିଲେ - 'ହେ ଭଗବାନ୍ ! ପୃଥିବୀଯାତ୍ରା କରୁଥିବା ମୁଁ କଳିଯୁଗକୁ କିପରି ପାର କରିବି ?

**ସ ହୋବାଚ ବ୍ରହ୍ମା ସାଧୁ ପୃଷ୍ଟୋଽସ୍ମି ସର୍ବଶ୍ରୁତିରହସ୍ୟଂ ଗୋପ୍ୟଂ ତଚ୍ଛୃଣୁ ଯେନ କଳିସଂସାରଂ ତରିଷ୍ୟସି । ଭଗବତ ଆଦିପୁରୁଷସ୍ୟ ନାରାୟଣସ୍ୟ ନାମୋଚ୍ଚାରଣମାତ୍ରେଣ ନିର୍ଧୂତକଳିର୍ଭବତି ॥୨॥**

ବ୍ରହ୍ମା କହିଲେ 'ତୁମେ ବଡ଼ ଉତ୍ତମ ପ୍ରଶ୍ନ କରିଛ । ସଂପୂର୍ଣ୍ଣ ଶ୍ରୁତିଗୁଡ଼ିକର ଯେଉଁ ଗୁପ୍ତ ରହସ୍ୟ ଅଛି, ଯଦ୍‌ଦ୍ୱାରା ତୁମେ କଳି-ସଂସାରରୁ ତରିଯିବ, ତାହା ଶୁଣ । ସେହି ଆଦି ପୁରୁଷ ଭଗବାନ୍ ନାରାୟଣଙ୍କ ନାମୋଚ୍ଚାରଣମାତ୍ରକେ ହିଁ କଳିର ପାପସମୂହରୁ ମନୁଷ୍ୟ ମୁକ୍ତ ହୋଇ ପାରେ ।'

**ନାରଦଃ ପୁନଃ ପପ୍ରଚ୍ଛ । ତନ୍ନାମ କିମିତି । ସ ହୋବାଚ ହିରଣ୍ୟଗର୍ଭଃ ।**

**ହରେ ରାମ ହରେ ରାମ ରାମ ରାମ ହରେ ହରେ ।**
**ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ ॥**

**ଇତି ଷୋଡ଼ଶକଂ ନାମ୍ନାଂ କଳିକଳ୍ମଷନାଶନମ୍ । ନାତଃ ପରତରୋପାୟଃ ସର୍ବବେଦେଷୁ ଦୃଶ୍ୟତେ ॥ ଇତି ଷୋଡ଼ଶକଳାବୃତସ୍ୟ ପୁରୁଷସ୍ୟ ଆବରଣବିନାଶନମ୍ ॥ ତତଃ**

**ପ୍ରକାଶତେ ପରଂ ବ୍ରହ୍ମ ମେଘାପାୟେ ରବିରଶ୍ମିମଣ୍ଡଳୀବେତି ।।୩।।**

'ଶ୍ରୀନାରଦ ପୁଣି ପଚ୍ଚରିଲେ କି - ତାହା ଭଗବାନଙ୍କର କେଉଁ ନାମଟି ?' ବ୍ରହ୍ମା କହିଲେ ସେହି ନାମ -

**ହରେ ରାମ ହରେ ରାମ ରାମ ରାମ ହରେ ହରେ ।**
**ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ ।। ***

ଏହି ଷୋଳଟି ନାମ ଉଚ୍ଚାରଣ କରିବା ଦ୍ୱାରା କଳିର ସକଳ ପାତକ ନଷ୍ଟ ହୋଇଯାଏ । ସଂପୂର୍ଣ୍ଣ ବେଦମାନଙ୍କରେ ଏହାଠାରୁ ଶ୍ରେଷ୍ଠ ଆଉ କୌଣସି ଉପାୟ ଦେଖିବାକୁ ମିଳେ ନାହିଁ । ଏହି ଷୋଳ କଳାରୁ ମୁକ୍ତ ପୁରୁଷର ଆବରଣ (ଅଜ୍ଞାନପରଦା) ନଷ୍ଟ ହୋଇଯାଏ ଏବଂ ମେଘମାନଙ୍କର ନାଶ ହେଲେ ଯେପରି ସୂର୍ଯ୍ୟକିରଣସମୂହ ପ୍ରକାଶିତ ହୁଏ, ସେହିପରି ହିଁ ଆବରଣନାଶ ଦ୍ୱାରା ବ୍ରହ୍ମର ପ୍ରକାଶ ହୋଇଯାଏ ।

**ପୁନର୍ନାରଦଃ ପପ୍ରଚ୍ଛ ଭଗବନ୍ କୋଽସ୍ୟ ବିଧିରିତି । ତଂ ହୋବାଚ ନାସ୍ୟ ବିଧିରିତି । ସର୍ବଦା ଶୁଚିରଶୁଚିର୍ବା ପଠନ୍ ବ୍ରାହ୍ମଣଃ ସଲୋକତାଂ ସମୀପତାଂ ସରୂପତାଂ ସଯୁଜତାମେତି ।।୪।।**

---

* ଏହି ମନ୍ତ୍ରରେ ଭଗବାନଙ୍କର ତିନୋଟି ନାମ ଅଛି - ହରି, ରାମ ଓ କୃଷ୍ଣ । ଏଗୁଡିକରେ 'ହରି' ଶବ୍ଦର ଅର୍ଥ - **'ହରତି ଯୋଗିଚେତାଂସୀତି ହରିଃ'** ଯେ ଯୋଗିମାନଙ୍କ ଚିତ୍ତକୁ ହରଣ କରେ, ସେ ହରି ଅଥବା **'ହରିର୍ହରତି ପାପାନି ଦୁଷ୍ଟଚିତ୍ତୈରପି ସ୍ମୃତଃ । ଅନିଚ୍ଛୟାପି ସଂସ୍ପୃଷ୍ଟୋ ଦହତ୍ୟେବ ହି ପାବକଃ ।।'** ଯେପରି ଅନିଚ୍ଛାରେ ସ୍ପର୍ଶ କରିଦେଲେ ମଧ୍ୟ ଅଗ୍ନି ଜାଳିଦିଏ, ସେହିଭଳି ଦୁଷ୍ଟଚିତ୍ତରେ ମଧ୍ୟ ସ୍ମରଣ କରାଯାଇଥିବା ଯେଉଁ ହରି ପାପସମୂହକୁ ହରି ନିଏ, ତାକୁ 'ହରି' କହନ୍ତି । 'ରାମ' ଶବ୍ଦର ଅର୍ଥ - **'ରମନ୍ତେ ଯୋଗିନୋଽସ୍ମିନ୍ନିତି ରାମଃ'** ଯେଉଁଥିରେ ଯୋଗିମାନେ ରମଣ କରନ୍ତି, ତାହାର ନାମ ରାମ, ଅଥବା **'ରମନ୍ତେ ଯୋଗିନୋଽନନ୍ତେ ନିତ୍ୟାନନ୍ଦେ ଚିଦାତ୍ମନି । ଇତି ରାମପଦେନାସୌ ପରଂ ବ୍ରହ୍ମାଭିଧୀୟତେ ।।'** ଯେଉଁ ଅନନ୍ତ ଚିଦାତ୍ମା ପରବ୍ରହ୍ମରେ ଯୋଗିମାନେ ରମଣ କରନ୍ତି, ସେ ରାମ ଅଟନ୍ତି । 'କୃଷ୍ଣ ଶବ୍ଦର ଅର୍ଥ - **'କର୍ଷତି ଯୋଗିନାଂ ମନାଂସୀତି କୃଷ୍ଣଃ'** ଯିଏ ଯୋଗିମାନଙ୍କ ଚିତ୍ତକୁ ଆକର୍ଷଣ କରେ, ସେ କୃଷ୍ଣ ଅଥବା **'କୃଷିର୍ଭୂବାଚକଃ ଶବ୍ଦୋ ଣଶ୍ଚ ନିର୍ବୃତିବାଚକଃ । ତୟୋରୈକ୍ୟଂ ପରଂ ବ୍ରହ୍ମ କୃଷ୍ଣ ଇତ୍ୟଭିଧୀୟତେ ।।'** କୃଷି ଭୂ ଅର୍ଥାତ୍ ସତ୍ତାବାଚକ ଓ 'ଣ' ନିର୍ବୃତିବାଚକ, ଏହି ଦୁହିଁଙ୍କର ଏକତା ହେଲେ ପରଂବ୍ରହ୍ମ 'କୃଷ୍ଣ' ବୋଲି କଥିତ ହୁଏ ।

‘ନାରଦ ପୁଣି ପଗ୍ଚରିଲେ - ହେ ଭଗବାନ୍ ! ଏହାର ବିଧି କ’ଣ ? ବ୍ରହ୍ମା କହିଲେ - କୌଣସି ବିଧି ନାହିଁ । ସର୍ବଦା ଶୁଦ୍ଧ ହୁଅ ବା ଅଶୁଦ୍ଧ, ନାମୋଚ୍ଚାରଣମାତ୍ରକେ ହିଁ ସାଲୋକ୍ୟ, ସାମୀପ୍ୟ ସାରୂପ୍ୟ ଓ ସାଯୁଜ୍ୟ-ମୁକ୍ତି ମିଳିଯାଏ ।’

**ଯଦାସ୍ୟ ଷୋଡ଼ଶକସ୍ୟ ସାର୍ଧତ୍ରିକୋଟୀର୍ଜପତି ତଦା ବ୍ରହ୍ମହତ୍ୟାଂ ତରତି । ସ୍ୱର୍ଣ୍ଣସ୍ତେୟାତ୍ ପୂତୋ ଭବତି । ବୃଷଳୀଗମନାତ୍ ପୂତୋ ଭବତି । ସର୍ବଧର୍ମପରିତ୍ୟାଗପାପାତ୍ ସଦ୍ୟଃ ଶୁଚିତାମାପ୍ନୁୟାତ୍ । ସଦ୍ୟୋ ମୁଚ୍ୟତେ ସଦ୍ୟୋ ମୁଚ୍ୟତେ ଇତ୍ୟୁପନିଷତ୍ ॥ ୫ ॥**

ବ୍ରହ୍ମା ପୁଣି କହିବାକୁ ଲାଗିଲେ କି ଯଦି କୌଣସି ପୁରୁଷ ଏହି ଷୋଳଟି ନାମକୁ ସାଢ଼େ ତିନି କୋଟି ଥର ଜପ କରି ନିଏ, ତା ହେଲେ ସେ ବ୍ରହ୍ମହତ୍ୟା, ସ୍ୱର୍ଣ୍ଣଚ୍ଚୋରି, ଶୁଦ୍ର-ସ୍ତ୍ରୀ-ଗମନ ଓ ସର୍ବଧର୍ମତ୍ୟାଗରୂପୀ ପାପମାନଙ୍କରୁ ମୁକ୍ତ ହୋଇଯାଏ । ସେ ତତ୍କାଳ ମୁକ୍ତିକୁ ପ୍ରାପ୍ତ ହୁଏ । ତତ୍କାଳ ହିଁ ମୁକ୍ତି କୁ ପ୍ରାପ୍ତ ହୁଏ ।’

## ଜପର ବିଧି

ଏହା ଦ୍ୱାରା ସିଦ୍ଧ ହେଇଗଲା ଯେ ସ୍ତ୍ରୀ-ପୁରୁଷ,ବ୍ରାହ୍ମଣ-ଅନ୍ତ୍ୟଜ, ଗୃହୀ-ବନବାସୀ, ଶୁଦ୍ଧ-ଅଶୁଦ୍ଧ, ବିଦ୍ୱାନ୍-ମୂର୍ଖ କେହି ମଧ୍ୟ କୌଣସି ପ୍ରକାରେ ଯଦି ଏହି ଷୋଡ଼ଶ ନାମକୁ ସାଢ଼େ ତିନି କୋଟି ଥର ଜପ କରିନିଏ, ତେବେ ସେ ସମସ୍ତ ମହାପାତକରୁ , ତାହାର ଫଳସ୍ୱରୂପ ନରକସମୂହରୁ ଓ ସ୍ୱର୍ଗାଦି ମୋକ୍ଷ ମାର୍ଗର ପ୍ରତିବନ୍ଧକଗୁଡ଼ିକରୁ ମୁକ୍ତ ହୋଇ ପରମାତ୍ମାଙ୍କ ସଚ୍ଚିଦାନନ୍ଦ-ଘନସ୍ୱରୂପକୁ ଅନାୟାସ ହିଁ ପ୍ରାପ୍ତ ହୋଇଯାଏ । କେତେ ସହଜ ଓ ଶସ୍ତା ଉପାୟ ? ଯଦି ମନୁଷ୍ୟ ପ୍ରତିଦିନ ପ୍ରାୟ ୬୫୦୦ ଥର ଏଇ ମନ୍ତ୍ରକୁ ଜପ କରେ (ଯାହା ଷୋହଳ-ନାମ ମନ୍ତ୍ରର ପ୍ରାୟ ୬୧ ମାଳାରେ ହୋଇଯାଏ ।) ତା ହେଲେ କେବଳ ୧୫ ବର୍ଷରେ ସାଢ଼େ ତିନି କୋଟି ଜପ-ସଂଖ୍ୟା ପୂର୍ଣ୍ଣ ହୋଇଯାଏ । ଏହା ତ ସାଧାରଣ ଜପବିଧିର କଥା । ଯଦି ଉପାଂଶୁ ବା ମାନସ ଜପ କରାଯାଏ, ତା ହେଲେ ଖୁବ୍ ଶୀଘ୍ର ସଫଳତା ମିଳି ପାରେ ।

ଯେଉଁ ପରମାତ୍ମାଙ୍କୁ ପାଇବା ପାଇଁ ଲକ୍ଷେ- କୋଟି ଜନ୍ମ ପର୍ଯ୍ୟନ୍ତ ପ୍ରତୀକ୍ଷା କରିବାକୁ ପଡ଼େ, ଯେଉଁ ପରମାତ୍ମସୁଖକୁ ପାଇବା ପାଇଁ ଅନନ୍ତ

ଜନ୍ମର ସାଧନା ଆବଶ୍ୟକ ହୁଏ, ସେହି ପରମାତ୍ମାଙ୍କ ପ୍ରାପ୍ତିରୂପ ସିଦ୍ଧି ଯଦି ପନ୍ଦର ବର୍ଷରେ ଘରେ ରହି, ସଂସାରର କାମ ଦାମ କରି ଏବଂ ଶାସ୍ତ୍ର ଅବିରୁଦ୍ଧ ଭୋଗମାନ ଭୋଗ କରି ମିଳି ଯାଏ, ତା ହେଲେ ପୁଣି ଆଉ କ'ଣ ଦରକାର ? ଏହାଠୁଁ ଭଳି ଶସ୍ତା ସଉଦା ଆଉ କ'ଣ ହୋଇପାରେ ? ସାମାନ୍ୟ ଧନସଂଗ୍ରହ ଲୋଭରେ ଆମେ ଆମର ସମସ୍ତ ଆୟୁ ବିତାଇ ଦେଉଛେ । ଯାହାର ସଂଗ୍ରହ ହେବା ନ ହେବା ମଧ୍ୟ ଅନିଶ୍ଚିତ ! କିନ୍ତୁ ସମସ୍ତ ଧନର ମୂଳ, ସମଗ୍ର ଧନପତିମାନଙ୍କର ଏକମାତ୍ର ସ୍ୱାମୀ, ସମସ୍ତ ଦେବ, ଯକ୍ଷ , ଗନ୍ଧର୍ବ,କିନ୍ନର, ପିତୃ, ମନୁଷ୍ୟ ଓ ରାକ୍ଷସ ଆଦିଙ୍କ ସମସ୍ତ ଧନକୁ ଯେଉଁ ଅତୁଳ ଧନ-ରାଶିର ଗୋଟିଏ ଅଂଶର କୋଟି ଅଂଶ ସହ ମଧ୍ୟ ତୁଳନା କରାଯାଇ ନ ପାରେ, ଏତାଦୃଶ ସେହି ପରମ ଧନ ନିଜେ ଯଦି ପନ୍ଦର ବର୍ଷର ଶ୍ରଦ୍ଧାଯୁକ୍ତ ସହଜ ସାଧନା ଦ୍ୱାରା ନିଜର ଅସ୍ତିତ୍ୱ ସହିତ ତୁମର ଅସ୍ତିତ୍ୱକୁ ମିଶାଇ ନିଏ, ତା ହେଲେ କୁହ,ପୁଣି ତୁମକୁ ଆଉ କେଉଁ ବସ୍ତୁର ଆବଶ୍ୟକତା ରହିଯାଉଛି ? ଯେବେ ସ୍ୱୟଂ ସମ୍ରାଟ୍ ପଦ ହିଁ ମିଳିଯାଏ, ତେବେ ଛୋଟ-ଛୋଟ ଖେତ ତ ଆପେ ଆପେ ସେଥି ଆସି ଯାଆନ୍ତି । ତୁମେ ସଂସାରର ତୁଚ୍ଛ ଧନ ଚାହୁଁଛ । ସେ ସମସ୍ତ ଭଣ୍ଡାରର ସ୍ୱାମିତ୍ୱ ତୁମକୁ ସମର୍ପି ଦେଉଛି । ପୁଣି ତୁଚ୍ଛ ଧନପ୍ରାପ୍ତି ନିମିତ୍ତ କେହି ଗ୍ୟାରେଣ୍ଟି ମଧ୍ୟ କରୁନାହିଁ । ସବୁ ବୁଦ୍ଧିମାନ୍ ଲୋକେ ଏପରି ହିଁ କହନ୍ତି, ଭାଇ ! ଉଦ୍ୟୋଗ କର, ତୁମ ଭାଗ୍ୟରେ ଥିବ ତ ମିଳିଯିବ, କିନ୍ତୁ ଏହି ପରମଧନ ପ୍ରାପ୍ତି ପାଇଁ ଶାସ୍ତ୍ର ତ ଜିମ୍ମା ନେଉଛନ୍ତି । ବ୍ରହ୍ମା ନିଜେ କହୁଛନ୍ତି । ଇତିହାସ ଏହି କଥାର ସତ୍ୟତାର ପ୍ରମାଣ ଦେଉଛି । ଭକ୍ତମାନଙ୍କର ଗାଥାମାନ ଉଚ୍ଚ ସ୍ୱରରେ ଏହି ଧ୍ରୁବ ସତ୍ୟର ଘୋଷଣା କରୁଛନ୍ତି । ଏହାର ପ୍ରତ୍ୟକ୍ଷ ଉଦାହରଣମାନ ମଧ୍ୟ ମିଳିପାରେ, ଏପରି ସ୍ଥିତିରେ ଅବିଶ୍ୱାସର ତ କୌଣସି କଥା ନାହିଁ ।

ଲୋକେ କହିପାରନ୍ତି -'ଆମେ ଘରର କାମ କରୁଥିବା ଅବସ୍ଥାରେ ପ୍ରତିଦିନ ଏତେ ମନ୍ତ୍ରଜପ କିପରି କରିବୁ ? ଏତେ ଜପ ପାଇଁ ଅତିକମ୍‌ରେ ଛଅ ଘଣ୍ଟା ସମୟ ଆବଶ୍ୟକ ।' କିନ୍ତୁ ସେମାନଙ୍କର ଏପରି କହିବାଟା ଭୂଲରୁ ହୁଏ, ଯଦି ଆମେ ସମୟର ଉପଯୋଗ ସାବଧାନତାପୂର୍ବକ କରିବା, ତା

ହେଲେ ଘର କାମରେ ଓ ଜୀବିକାନିର୍ବାହରେ କୌଣସିପ୍ରକାର ବାଧା ନ ଉପୁଜି ମଧ୍ୟ ଏତିକି ଜପ ପ୍ରତିଦିନ ହୋଇପାରିବ । ସେହି ଦେବମନ୍ତ୍ରର ଜପରେ ବାଧା ଉପୁଜେ, ଯାହାକୁ ସ୍ନାନ ସାରି ଶୁଦ୍ଧ ହୋଇ ଗୋଟିଏ ସମୟରେ ଓ ଗୋଟିଏ ଜାଗାରେ ବସି କରାଯାଏ । ସେପ୍ରକାର ଜପରେ ନିରବଚ୍ଛିନ୍ନ ଏତେ ସମୟ ଲଗାଇବା କଷ୍ଟକର ହୋଇଥାଏ, କିନ୍ତୁ ଏହି ନାମ-ମନ୍ତ୍ର ଜପରେ ସେପ୍ରକାର କୌଣସି ବାଧା ନାହିଁ । ଗ୍ଲୁ-ଗ୍ଲୁ,ବୁଲୁ-ବୁଲୁ, ବସୁ-ବସୁ, ଉଠୁ-ଉଠୁ, ଶୋଉ-ଶୋଉ ଜୀବିକାନିର୍ବାହ କରୁ-କରୁ ସବୁ ବେଳେ, ସବୁ ଅବସ୍ଥାରେ ଏହି ଜପ ହୋଇପାରେ । ଯଦି ଆମେ ହିସାବ ଲଗାଇ ଦେଖିବା, ତା ହେଲେ ଦିନରାତି ଚବିଶଘଣ୍ଟା ସମୟମଧ୍ୟରୁ ଛଅଘଣ୍ଟା ନିଦ୍ରାକୁ ବାଦ୍ ଦେଲେ ବାକି ଅଠର ଘଣ୍ଟାଯାକ କେବଳ ଶରୀର ରକ୍ଷା ଓ ଜୀବିକା ନିର୍ବାହ କାର୍ଯ୍ୟରେ ହିଁ ଅତିବାହିତ ହୁଏ ନାହିଁ । ଆମର ବହୁତ ସମୟ ବ୍ୟର୍ଥ କଥାବାର୍ତ୍ତାରେ ବିତି ଯାଏ, ଯଦି ଆମେ ବାଣୀକୁ ସଂଯମ କରିବା ଶିଖିଯିବା ଏବଂ ବିନା ପ୍ରୟୋଜନରେ, ବିନା କାର୍ଯ୍ୟରେ କଥା କହିବା ଛାଡ଼ି ଦେବା, ତା ହେଲେ ମୋ ବୁଝିବାରେ ରାଜାଠାରୁ ମୂଲିଆପର୍ଯ୍ୟନ୍ତ ସମସ୍ତଙ୍କୁ ପ୍ରତିଦିନ ଏତିକି ନାମ-ଜପ କରିବା ପାଇଁ ଯଥେଷ୍ଟ ସମୟ ସହଜରେ ହିଁ ମିଳି ପାରିବ । ଆମେ ଚେଷ୍ଟା କରୁନାହୁଁ,କେବଳ ବାହାନା କରୁଛୁ । ଯଦି ଚେଷ୍ଟା କରିବା, ସମୟର ମୂଲ୍ୟ ବୁଝିବା, ତା ହେଲେ ଗୋଟିଏ କ୍ଷଣ ମଧ୍ୟ ହରିଙ୍କ ନାମ ବିନା ବ୍ୟର୍ଥ ଯିବାକୁ ଦେବା ନାହିଁ । କାମନିମିତ୍ତ ଯେତିକି କହିବା ଆବଶ୍ୟକ, ସେତିକି କହି ଦେଲ ପୁଣି ବାଣୀକୁ ସେହି ନାମ-ଜପରେ ଲଗାଇ ଦେଲ । ଏପ୍ରକାର ଅଭ୍ୟାସ କରି ଗ୍ଲିଲେ, ଏପରି ଅଭ୍ୟାସ ପଡ଼ିଯାଏ ଯେ ପୁଣି ନାମଜପ ଛୁଟିବା କଷ୍ଟକର ହୋଇଯାଏ । ତଥାପି ସାଧକର ଏପରି ପ୍ରବଳ ଇଚ୍ଛା ହେବାକୁ ଲାଗେ କି - ମୁଁ ଚବିଶଘଣ୍ଟା ଧରି ନାମ ଜପ କରି ଗ୍ଲିବି । ତାକୁ ଅଳ୍ପ ଜପରେ ସନ୍ତୋଷ ଆସେ ନାହିଁ । ଯେପରି ଖୁବ୍ ଜୋରରେ କ୍ଷୁଧା ଅଥବା ତୃଷା ଲାଗିଲେ ମନୁଷ୍ୟର ପ୍ରତିଟି କ୍ଷଣ କଷ୍ଟରେ ବିତେ, ସେହି ଭଳି ନାମ-ପ୍ରେମୀର ମଧ୍ୟ ଯେଉଁ କ୍ଷଣଟି ବିନା ଜପରେ ଯାଏ, ତା' ବଡ଼ କଷ୍ଟରେ ବିତେ ।

**************************************************

ଜପ ତାହାରି ନାମ, ଯାହା ସଂଖ୍ୟାରେ କରାଯାଏ । ଜପର ତିନି ପ୍ରକାର ପୂର୍ବରୁ କୁହାଯାଇ ସାରିଛି । ସେଗୁଡ଼ିକ ବ୍ୟତୀତ ସାଧକ ସୁବିଧା ପାଇଁ ଆହୁରି ମଧ୍ୟ କେତେକ ପ୍ରକାର କଥିତ ଅଛି, ଯେପରି -

(୧) ଶ୍ୱାସଦ୍ୱାରା ଜପ କରିବା ।

(୨) ନାଡ଼ିଦ୍ୱାରା ଜପ କରିବା ।

(୩) ମାନସମୂର୍ତ୍ତି-ପୂଜାଭଳି ନାମର ଅକ୍ଷରଗୁଡ଼ିକୁ ମନରେ କଳ୍ପନା କରି ବାରମ୍ବାର ପଢ଼ିବା ।

(୪) ଭଗବାନଙ୍କ ମୂର୍ତ୍ତି କଳ୍ପନା କରି ଏବଂ ତା' ଉପରେ ନାମାକ୍ଷରଗୁଡ଼ିକୁ ଗହଣା ଭଳି କଳ୍ପନା କରି ଆବୃତ୍ତି କରିବା ।

ଆହୁରି କେତେପ୍ରକାର ଭେଦ ଅଛି, ବିସ୍ତୃତିଭୟରୁ ଏଠାରେ ଲେଖା ଯାଉନାହିଁ, ଉପର୍ଯୁକ୍ତ ଚାରିପ୍ରକାର ଜପ ସ୍ପଷ୍ଟ କରିଦେବା ଆବଶ୍ୟକ ।

(୧)ପ୍ରତ୍ୟେକ ଶ୍ୱାସର ଗତି ଆଡ଼କୁ ଲକ୍ଷ୍ୟ ରଖିବା ଏବଂ ଶ୍ୱାସର ଆସିବାରେ ଓ ଯିବାରେ ଶ୍ୱାସର ଶବ୍ଦସହିତ ହିଁ ମନ୍ତ୍ରକୁ କଳ୍ପନା କରିବା, ତାହା ସହିତ ଜିଭଦ୍ୱାରା ମଧ୍ୟ ଉପାଂଶୁରୂପେ ଉଚ୍ଚାରଣ କରି ଚାଲିବା, ଆରମ୍ଭରେ ମାଳା ରଖିବା ଏବଂ ଶ୍ୱାସ ସହିତ ହେଉଥିବା ପ୍ରତ୍ୟେକ ଜପର ଗଣତି ରଖିବା । ଯଦି ଏହିଭଳି ଦୁଇ-ଚାରି ମାଳା ପ୍ରତିଦିନ ଜପିବାର ଅଭ୍ୟାସ କରାଯାଏ, ତା ହେଲେ ମନ ଖୁବ୍ ଶୀଘ୍ର ସ୍ଥିର ହୋଇ ନାମରେ ଲାଗିପାରେ । ଶ୍ୱାସର ଜପ ମନ ବିନା ହୁଏ ନାହିଁ । ସାଧାରଣ ଜପ ଓ ଉପାଂଶୁ ଜପ ତ ଅଭ୍ୟାସ ହେଲା ପରେ ମନ ଅନ୍ୟତ୍ର ରହିଲେ ମଧ୍ୟ ହୋଇପାରେ, କିନ୍ତୁ ଶ୍ୱାସର ଜପ ମନ ବିନା ହୁଏ ନାହିଁ । ମନ ନ ରହିଲେ, ଶ୍ୱାସର ଗତିରୁ ଧ୍ୟାନ ଛାଡ଼ି ଯାଏ, କେବଳ ଜିଭଦ୍ୱାରା ଜପ ହୋଇ ଚାଲିଥାଏ । ଏଣୁ ଶ୍ୱାସଦ୍ୱାରା ଜପକାରୀକୁ ଶ୍ୱାସର ଗତି ଆଡ଼କୁ ଧ୍ୟାନ ରଖିବାକୁ ପଡ଼େ । ଯଦି ମନ ଅନ୍ୟତ୍ର ଗଲା ତେବେ ଜପ ବନ୍ଦ ହୋଇଗଲା । କବୀର କହିଛନ୍ତି -

**ସାଁସୌ ସାଁସା ନାମ ଜପ । ଅରୁ ଉପାୟ କଛୁ ନାହିଂ ।**

(୨) ଏହିଭଳି ନାଡ଼ୀର ଜପ ଅଛି । ନାଡ଼ୀର ଗତି ଶ୍ୱାସଠାରୁ ମଧ୍ୟ ସୂକ୍ଷ୍ମ । ହାତ,ଗଳା,ମସ୍ତକ ଆଦିର ନାଡ଼ୀଗୁଡ଼ିକ ଆଙ୍ଗୁଳି ଲଗାଇଲେ ଚାଲୁ

ଥିବାର ଜଣାଯାଏ । ଅତଏବ ପ୍ରଥମେ-ପ୍ରଥମେ ନାଡ଼ୀଦ୍ୱାରା ଜପ କରୁଥିବା ଲୋକକୁ ଆଙ୍ଗୁଳି ସାହାଯ୍ୟରେ ନାଡ଼ୀର ଗତିକୁ ନିରୀକ୍ଷଣ କରି ମନକୁ ସେହି ଗତି ଆଡକୁ ଲଗାଇ ନାଡ଼ୀର ଗତି ସହିତ ହିଁ ତାର ପ୍ରତ୍ୟେକ ଆଘାତ ଉପରେ ମନ୍ତ୍ରର କଳ୍ପନା କରିବା ଉଚିତ । ଜିଭ ଓ ମାଳାର ପ୍ରୟୋଗ ଶ୍ୱାସଦ୍ୱାରା ଜପପରି ହିଁ କରିବା ଉଚିତ ।

(୩) ଆଖି ବୁଜି ମନ୍ତ୍ରର ସବୁ ଅକ୍ଷରଗୁଡ଼ିକୁ ନିଜ ଆଗରେ ଆକାଶରେ ବା ହୃଦୟରେ କଳ୍ପନା କରି ବାରମ୍ବାର ମନରେ ପଢ଼ି ଚାଲ, ତା ସଙ୍ଗେ-ସଙ୍ଗେ ଜିଭର ପ୍ରୟୋଗ ମଧ୍ୟ କରି ଚାଲ ଏବଂ ଗଣତିପାଇଁ ହାତରେ ମାଳା ରଖ । ମନ୍ତ୍ରର ଅକ୍ଷରଗୁଡ଼ିକୁ, ସମ୍ଭବ ହେଲେ ବରାବର ମନରେ ଧାରଣ କରି ରଖ, ଅଥବା ପ୍ରତ୍ୟେକ ମନ୍ତ୍ରର ଜପ ଆରମ୍ଭ କଲାବେଳେ କଳ୍ପନା କରି ନିଅ ଏବଂ ମନ୍ତ୍ର ପୂରା ହେବା କ୍ଷଣି ଲିଭାଇ ଦିଅ । ଯେଉଁ ପ୍ରକାରେ ସୁବିଧା ବୋଧ ହେବ, ତାହାହିଁ କର ।

(୪) ମନର ରୁଚି ଅନୁସାରେ ଭଗବାନଙ୍କର କୌଣସି ମୂର୍ତ୍ତି କଳ୍ପନା କରି ମୂର୍ତ୍ତିର ଚରଣଯୁଗଳରେ ବା ଗଳାର ମାଳାରେ ବା ମସ୍ତକରେ, ମୁକୁଟରେ ବା ହସ୍ତ-ପଦାଦି ଅଙ୍ଗଉପରେ ପ୍ରସ୍ତର ଖଚିତ ନାନା ରଙ୍ଗର ଅଳଙ୍କାରରୂପେ ମନ୍ତ୍ରର ଜାଜ୍ୱଲ୍ୟମାନ ଅକ୍ଷରଗୁଡିକୁ କଳ୍ପନା କରି ଆଖି ବୁଜି ବାରମ୍ବାର ମନରେ ଜପ କରିଚାଲ ଆଉ ସବୁ କଥା ତୃତୀୟ ନିୟମ ଭଳି ହିଁ କର ।

ଯୋଗଦର୍ଶନକାର କହନ୍ତି - **'ତଜ୍ଜପସ୍ତଦର୍ଥଭାବନମ୍'** ତାହାରି ବାଚକ ପ୍ରଣବକୁ ଜପ କରି କରି ତା'ର ବାଚ୍ୟ ନାମୀର (ଈଶ୍ୱରଙ୍କ)ଭାବନା କର । ବାଣୀଦ୍ୱାରା ଜପ ଓ ମନରେ ଧ୍ୟାନ-ଉଭୟ ଏକାସଙ୍ଗେ ହେବା ବହୁତ ହିଁ ଉତ୍ତମ ସାଧନ । ଭଗବାନ୍ ମଧ୍ୟ କହିଛନ୍ତି -

**ଓମିତ୍ୟେକାକ୍ଷରଂ ବ୍ରହ୍ମ ବ୍ୟାହରନ୍ମାମନୁସ୍ମରନ୍ ।**
**ଯଃ ପ୍ରୟାତି ତ୍ୟଜନ୍ଦେହଂ ସ ଯାତି ପରମାଂ ଗତିମ୍ ॥**

(ଗୀତା ୮/୧୩)

'ଯିଏ ଏହି ଓଁ ରୂପକ ଏକାକ୍ଷର ନାମ-ବ୍ରହ୍ମକୁ ଉଚ୍ଚାରଣ କରି କରି

ଓ 'ନାମୀ' ସ୍ୱରୂପ ମୋତେ ଅର୍ଥାତ୍ ପରମାତ୍ମାଙ୍କୁ ସ୍ମରଣ କରି କରି ଶରୀରକୁ ଛାଡ଼ି ଯାଏ, ସେହି ପୁରୁଷ ପରମ ଗତିକୁ ପ୍ରାପ୍ତ ହୋଇଥାଏ ।'

ମନରେ ଭଗବାନଙ୍କ ମୂର୍ତ୍ତିକୁ, ଭଗବଦ୍ଭାବକୁ ଅଥବା ଭଗବନ୍ନାମକୁ ଧ୍ୟାନ-ସ୍ମରଣ କରି କରି ଜିଭରେ ଜପ କରିବା ସର୍ବୋତ୍ତମ ଜପ ଅଟେ; ଉପର୍ଯ୍ୟୁକ୍ତ ଶ୍ୱାସପ୍ରକାର ମଧ୍ୟ ଏହାର ଅନ୍ତର୍ଗତ । ଏଥିରୁ ଖସି ଆସିଲେ ଉପାଂଶୁ ହୁଏ ଓ ସେଠାରୁ ଖସିଆସିଲେ ସାଧାରଣ (ଜୋର-ଜୋରରେ ଉଚ୍ଚାରଣ କରି ଜପ କରିବା) ହୁଏ । ଯାହା ପାଇଁ ଯାହା ସୁଲଭ ଓ ସୁବିଧାଜନକ ଆଉ ରୁଚିକର ବୋଧ ହେବ, ସେ ତାହାହିଁ ଅଭ୍ୟାସ କରୁ । ଭଗବନ୍ନାମ ଏପରି ବସ୍ତୁ, ଯାହାକୁ ଯେକୌଣସି ପ୍ରକାରେ ଗ୍ରହଣ କଲେ ମଧ୍ୟ ମଙ୍ଗଳପ୍ରଦ ହିଁ ହୁଏ । ଭଗବନ୍ନାମ-ଜପରେ ରୁଚି ଆଉ ବିଶ୍ୱାସ ରହିବା ଉଚିତ, ତେବେ ଯାଇଁ ସଂସାରରୁ ମୁକ୍ତି । ଏତିକି ସ୍ମରଣ ରଖିବା ଉଚିତ କି ଯେଉଁ ଜପ ନିଷ୍କାମଭାବରେ ନାମୀର ଧ୍ୟାନ ସହ ଯୁକ୍ତ, ପ୍ରେମସହିତ, ନିରନ୍ତର ଓ ଗୁପ୍ତ ହୁଏ, ତାହାକୁ ହିଁ ଉତ୍ତମ ରୁ ଉତ୍ତମ ବୁଝାଯାଏ । ଅତଏବ ଯଥାସାଧ୍ୟ କିଛି ମାଳା (ଅତି କମ୍‌ରେ ୧୪ ମାଳା) ପ୍ରତିଦିନ ଜପିବା ଉଚିତ । ନିୟମ ଦ୍ୱାରା ଯେଉଁ କାମ ହୁଏ, ତାହା ଅନିୟମରେ ହୁଏ ନାହିଁ ।

ଯଦି ନିଷ୍କାମ ଭାବ ନ ଆସିପାରିଲା ତାହେଲେ ବିଶ୍ୱାସ ରଖି ସକାମ ଭାବରେ ହିଁ ଜପ କରିବା ଉଚିତ । ଭଗବନ୍ନାମ-ଜପର ମହିମା ଦ୍ୱାରା ଭବିଷ୍ୟତରେ ସକାମ ମଧ୍ୟ ନିଷ୍କାମ ହୋଇପାରେ । ପ୍ରାତଃସ୍ମରଣୀୟ ଭକ୍ତରାଜ ଧ୍ରୁବ ରାଜ୍ୟ-ଇଚ୍ଛାରେ ବଣକୁ ଯାଇ ଧ୍ୟାନସହିତ ମନ୍ତ୍ର-ଜପ କଲେ । ତାଙ୍କୁ ରାଜ୍ୟ ବି ମିଳିଲା ଓ ଭଗବାନଙ୍କ ପରମଧାମ ମଧ୍ୟ । ତାଙ୍କୁ ଖୁବ୍ ଶୀଘ୍ର ସିଦ୍ଧି ମଧ୍ୟ ମିଳିଲା । ଅଳ୍ପସମୟ ମଧ୍ୟରେ କାମ ମଧ୍ୟ ହୋଇଗଲା । ଏତେ ସବୁ କାହିଁକି ହୋଇଗଲା ? ଏଇଥିପାଇଁ କି ଧ୍ରୁବ ଦୃଢ଼ବିଶ୍ୱାସୀ ଥିଲା । ଯେତେବେଳେ ମାତାଙ୍କ ଠାରୁ ତାକୁ ଉପଦେଶ ମିଳିଲା, ସେତିକିବେଳେ ଧ୍ରୁବ ଘରୁ ବାହାରି ପଡ଼ିଲା । ରାସ୍ତାରେ ଭଗବାନ୍ ନାରଦ ଦେଖା ହେଲେ । ସେ ସହଜରେ ରାଜ୍ୟ ଦିଆଇବା ଲୋଭ ଦେଖାଇ ଓ ବଣରେ ଭୀଷଣ କଷ୍ଟର ଭୟ ଦେଖାଇ ଧ୍ରୁବକୁ ପରୀକ୍ଷା କଲେ, ଯେବେ ତାକୁ ଦୃଢ଼ ବୋଲି ଜାଣିଲେ, ତେବେ ନାରଦ ଦୟା କରି ତାକୁ ଭଗବନ୍ନାମର

ମନ୍ତ୍ର ଦେଇଦେଲେ । ଧ୍ରୁବ ଦୃଢ଼ନିଶ୍ଚୟ ସହିତ ଶରୀର-ମନର ସମସ୍ତ ସ୍ମୃତି ଭୁଲି ଯାଇ ମନ୍ତ୍ରଜପ କରିବାକୁ ଲାଗିଲା । ଭଗବଦ୍‌ଭାବ ଦ୍ୱାରା ତାହା ହୃଦୟରେ ଆନନ୍ଦର ସମୁଦ୍ର ଖେଳିଗଲା । ସାକ୍ଷାତ୍ ନାରାୟଣଙ୍କୁ ତା'ଆଗରେ ମୂର୍ତ୍ତିମାନ୍ ହୋଇ ପ୍ରତ୍ୟକ୍ଷ ଦର୍ଶନ ଦେବାକୁ ପଡ଼ିଲା । ଆଜି ଆମ୍ଭମାନଙ୍କ ଭଗବଦ୍‌ଦର୍ଶନରେ ଯେଉଁ ବିଳମ୍ବ ହେଉଛି, ତାହାର କାରଣ ହେଉଛି - ଆମର ନାମ ଉପରେ ପୂର୍ଣ୍ଣ ବିଶ୍ୱାସ ନାହିଁ । ଯେତିକି ମାତ୍ରାରେ ବିଶ୍ୱାସ ଥାଏ, ସେତିକି ମାତ୍ରାରେ ସିଦ୍ଧି ମଧ୍ୟ ହୋଇଥାଏ ।

ଭକ୍ତରାଜ ଶ୍ରୀହରିଦାସ ଠାକୁର ବଡ଼ ଜୋର୍‌ରେ ଉଚ୍ଚାରଣ କରି କରି ନାମ-ଜପ କରୁଥିଲେ । ତିନି ଲକ୍ଷ ନାମ-ଜପର ତାଙ୍କ ନିୟମ ଥିଲା । ରାମଚନ୍ଦ୍ର ଖାଁଦ୍ୱାରା ପଠାଯାଇଥିବା ବେଶ୍ୟା ତାଙ୍କୁ ପଥଚ୍ୟୁତ କରିବାକୁ ଆସିଲା; କିନ୍ତୁ ତିନି ରାତି ପର୍ଯ୍ୟନ୍ତ ହରିଦାସଙ୍କ ପବିତ୍ର ମୁଖାରବିନ୍ଦରୁ ବାହାରୁ ଥିବା ପରମ ପବିତ୍ର ହରିଧ୍ୱନିକୁ ଶୁଣି ନିଜେ ପାପପଥରୁ ଖଲାସ ହୋଇଗଲା ଓ ସେହି କ୍ଷଣି ଦୁରାଗ୍ରହ ଛାଡି ପରମ ବୈଷ୍ଣବୀ ହୋଇଗଲା । ତାତ୍ପର୍ଯ୍ୟ ଏହି ଯେ - ବିଶ୍ୱାସ ଓ ପ୍ରେମର ସହିତ ନାମ-ଜପ ହେବା ଉଚିତ । ଯେକୌଣସି ପ୍ରକାରେ ହେଉ, ନାମର ଫଳ ଅମୋଘ ।

## ସ୍ମରଣ

ସ୍ମରଣ ଜପସହିତ ମଧ୍ୟ ରହେ ଓ ପୃଥକ୍ ହୋଇ ମଧ୍ୟ ରହେ । ସାଧାରଣତଃ ପ୍ରଥମେ ସ୍ମୃତି ହେବା ବିନା ଜପ ହୁଏ ନାହିଁ ଓ କୀର୍ତ୍ତନ ମଧ୍ୟ ହୁଏ ନାହିଁ ; କିନ୍ତୁ ମଝିରେ ସ୍ମରଣ ଛାଡି ଗଲେ ମଧ୍ୟ ଜପ ଓ କୀର୍ତ୍ତନ ହୋଇ ଚାଲିଥାଏ । ଜିଭର ଅଭ୍ୟାସ ହୋଇ ଗଲା ପରେ ଜପ ହୋଇ ଚାଲିଥାଏ । ଠିକ୍ ମନ୍ତ୍ରମାନଙ୍କ ଅନୁସାରେ ହିଁ ମାଳାର ମଣିଗୁଡିକ ଉପରେ ହାତ ଚାଲୁ ରହିଥାଏ । କିନ୍ତୁ ସ୍ମରଣ ରହେ ନାହିଁ । ସ୍ମୃତି ମନର ଏକ ବୃତ୍ତି । ବାଣୀ ଅଭ୍ୟାସବଶତଃ ଗୋଟିଏ କାମ କରୁଥାଏ, ସେସମୟରେ ମନ କୌଣସି ଅନ୍ୟ ସ୍ମୃତିରେ ଘୂରିବୁଲୁଥାଏ । ଏଣୁ ଭଗବାନ୍ ମନ ସହିତ ବାଣୀର ଜପକୁ ଉତ୍ତମ କହିଛନ୍ତି । ଯେଉଁ ଜପରେ ନାମୀର ମୂର୍ତ୍ତି, ତା'ର ଗୁଣ, ତା'ର ଭାବ ଅଥବା ନାମର ସ୍ମୃତି ରହିଥାଏ, ସେହି ଜପକୁ ସ୍ମରଣଯୁକ୍ତ କୁହାଯାଏ । ଯେଉଁ ଜପ କେବଳ ଜିହ୍ୱାଦ୍ୱାରା ହୁଏ, ସେହି ଜପକୁ ରହିତ

କୁହାଯାଏ । ସ୍ମରଣରହିତ ଅପେକ୍ଷା ସ୍ମରଣଯୁକ୍ତର ମାହାତ୍ମ୍ୟ ଅଧିକ; କାରଣ ସେଥିରେ ମନ ଓ ବାଣୀ ଉଭୟ ଏକା କାମ କରନ୍ତି । ମହାତ୍ମା ପୁରୁଷଙ୍କ ଉକ୍ତି ହେଉଛି - ଯାହାର ବାଣୀ ଓ ମନ ଦୁହେଁ ଏକାଭଳି ହୁଅନ୍ତି, ସେହିଁ ପ୍ରକୃତ ସାଧୁ । ସ୍ମରଣଯୁକ୍ତ ଜପରେ ଜିଭ ଓ ମନ ଉଭୟ ଏକତାନ ହୋଇଯାଏ । ଏଇଥିପାଇଁ ତାହାର ଫଳ ଏତେ ବିଶେଷ; କିନ୍ତୁ ସ୍ମରଣ ମଧ୍ୟ ଏପରି ହୁଏ, ଯାହା କେବଳ ସ୍ମରଣ ବୋଲି ହିଁ କଥିତ ହୁଏ, ଜପ ବୋଲି ନୁହେଁ । ତାହାହିଁ ଜପ, ଯାହାର ସଂଖ୍ୟା ଅଛି । ସ୍ମରଣର କୌଣସି ସଂଖ୍ୟା ନ ଥାଏ । ଯେପର୍ଯ୍ୟନ୍ତ ସ୍ମରଣର ପୂର୍ଣ୍ଣ ଅଭ୍ୟାସ ହୋଇ ନଥିବ ସେପର୍ଯ୍ୟନ୍ତ ସ୍ମରଣଯୁକ୍ତ ଜପ ହିଁ କରିବାକୁ ଚେଷ୍ଟା କରିବା ଉଚିତ; କିନ୍ତୁ ଯେବେ ସ୍ମରଣର ପୂରା ଅଭ୍ୟାସ ହୋଇଯିବ, ତେବେ ପୁଣି ଜପର କୌଣସି ଆବଶ୍ୟକତା ରହିବ ନାହିଁ । ଏପରି ଅନନ୍ୟସ୍ମରଣର ବିଧି ଓ ତାହାର ଫଳ ଶ୍ରୀଭଗବାନ୍ କହୁଛନ୍ତି -

**ଅନନ୍ୟଚେତାଃ ସତତଂ ଯୋ ମାଂ ସ୍ମରତି ନିତ୍ୟଶଃ ।**
**ତସ୍ୟାହଂ ସୁଲଭଃ ପାର୍ଥ ନିତ୍ୟଯୁକ୍ତସ୍ୟ ଯୋଗିନଃ ॥**

(ଗୀତା ୮/୧୪)

'ଯେଉଁ ପୁରୁଷ ଅନନ୍ୟଚିତ୍ତ ହୋଇ ସଦା-ସର୍ବଦା ମୋତେ ସ୍ମରଣ କରେ, ମୋତେ ନିରନ୍ତର ସ୍ମରଣ କରୁଥିବା ସେହି ଯୋଗୀ ପାଇଁ ମୁଁ ସୁଲଭ ଅଟେ ।' ଚିତ୍ତରେ ଅନ୍ୟ ବିଷୟର କେବେ ସ୍ଥାନ ନ ଥିବ, ପ୍ରତିଦିନ ଓ ପ୍ରତିକ୍ଷଣ ତାହାରି ସ୍ମୃତି ଲାଗିରହିଥିବ । ଏହିଭଳି ନିତ୍ୟଯୁକ୍ତ ବ୍ୟକ୍ତିଙ୍କପାଇଁ ଭଗବାନ୍ ସହଜ (ଶସ୍ତା) ହୋଇ ଯାଆନ୍ତି, କିନ୍ତୁ ଏହି ସ୍ମରଣର ରୂପ କିପରି ହୁଏ ? ଭକ୍ତରାଜ କବୀର କହୁଛନ୍ତି -

**ସୁମିରନକୀ ସୁଧି ଯୋଂ କରୋ, ଜୈସେ କାମୀ କାମ ।**
**ଏକ ପଲକ ନା ବୀସରେ, ନିସିଦିନ ଆଠୋ ଯାମ ॥**
**ସୁମିରନକୀ ସୁଧି ଯୋଂ କରୋ, ଜ୍ୟୋଂ ସୁରଭୀ ସୁତ ମାଁହି ।**
**କହ କବୀର ଚାରୋ ଚରତ, ବିସରତ କବହୂଁ ନାଁହି ।**
**ସୁମିରନକୀ ସୁଧି ଯୋଂ କରୋ, ଜୈସେ ଦାମ କଁଗାଲ ॥**
**କହ କବୀର ବିସରେ ନହୀଂ, ପଲ-ପଲ ଲେତ ସମ୍ଭାଲ ॥**

ସୁମିରନସୋଂ ମନ ଲାଇୟେ, ଜୈସେ ନାଦ କୁରଂଗ ।
କହ କବୀର ବିସରେ ନହୀଂ, ପ୍ରାନ ତଜୈ ତେହି ସଂଗ ॥
ସୁମିରନସୋଂ ମନ ଲାଇୟେ, ଜୈସେ ଦୀପ ପତଂଗ ।
ପ୍ରାନ ତଜୈ ଛିନ ଏକମେଂ, ଜରତ ନ ମୋଡ଼େ ଅଂଗ ॥
ସୁମିରନସୋଂ ମନ ଲାଇୟେ, ଜୈସେ କୀଟ ଭିରଂଗ ।
କବୀର ବିସାରେ ଆପକୋ, ହୋୟ ଜାୟ ତେହି ରଂଗ ॥
ସୁମିରନସୋଂ ମନ ଲାଇୟେ, ଜୈସେ ପାନୀ ମୀନ ।
ପ୍ରାନ ତଜେ ପଲ ବୀଛୁଡ଼େ, ସତ କବୀର କହ ଦୀନ ॥

ଯେପରି କାମୀ ଆଠ ପ୍ରହରରେ କ୍ଷଣକ ପାଇଁ ମଧ୍ୟ ସ୍ତ୍ରୀକୁ ଭୁଲେ ନାହିଁ, ଯେପରି ଗାଈ ବଣରେ ଘାସ ଚରୁଥିଲେ ମଧ୍ୟ ବାଛୁରୀକୁ ସବୁବେଳେ ମନେ ରଖିଥାଏ, ଯେପରି କାଂଗାଳ ନିଜ ଅଣ୍ଟାରେ ଥିବା ପଇସାକୁ ପ୍ରତିକ୍ଷଣ ସମ୍ଭାଳି ରଖେ, ଯେପରି ହରିଣ ପ୍ରାଣ ଦେଇ ଦିଏ; କିନ୍ତୁ ବୀଣାର ସ୍ୱରକୁ ଭୁଲିବାକୁ ଇଚ୍ଛା କରେ ନାହିଁ, ଯେପରି ବିନା ସଂକୋଚରେ ପତଙ୍ଗ ଦୀପଶିଖାରେ ଜଳି ମରେ; କିନ୍ତୁ ତା'ରୂପକୁ ଭୁଲେ ନାହିଁ, ଯେପରି କୀଟ ନିଜକୁ ନିଜେ ଭୁଲେଇ ଭ୍ରମରର ସ୍ମରଣରେ ତାହାରି ରଂଗର ହୋଇଯାଏ ଏବଂ ଯେପରି ମାଛ ପାଣିରୁ ଅଲଗା ହେଲେ ପ୍ରାଣ ତ୍ୟାଗ କରି ଦିଏ; କିନ୍ତୁ ତାକୁ ଭୁଲେ ନାହିଁ । ଗୋସାଇଁ ମହାରାଜ ମଧ୍ୟ କହିଛନ୍ତି -

**କାମିହି ନାରି ପିଆରି ଜିମି ଲୋଭିହି ପ୍ରିୟ ଜିମି ଦାମ ।**
**ତିମି ରଘୁନାଥ ନିରଂତର ପ୍ରିୟ ଲାଗହୁ ମୋହି ରାମ ॥**

ସ୍ମରଣର ଏହି ସ୍ୱରୂପ ଅଟେ ।

ଏହି ପ୍ରକାରେ ଯେଉଁମାନଙ୍କ ମନ ସେହି ପରମାତ୍ମାଙ୍କ ନାମ-ଚିନ୍ତନରେ ରତ ହୋଇଯାଏ, ସେମାନେ ତୃପ୍ତ, ପୂର୍ଣ୍ଣକାମ ଓ ଅକାମ ହୋଇଯାଆନ୍ତି । ସେମାନଙ୍କ ପାଇଁ କୌଣସି ବସ୍ତୁର ଇଚ୍ଛା ଅବଶେଷ ରହେନାହିଁ । ଭଗବାନ୍ କହିଛନ୍ତି -

**ନ ପାରମେଷ୍ଠ୍ୟଂ ନ ମହେନ୍ଦ୍ରଧିଷ୍ଣ୍ୟଂ**
**ନ ସାର୍ବଭୌମଂ ନ ରସାଧିପତ୍ୟମ୍ ।**

**ନ ଯୋଗସିଦ୍ଧୀରପୁନର୍ଭବଂ ବା**
**ମୟ୍ୟର୍ପିତାତ୍ମେଚ୍ଛତି ମଦ୍ୱିନାନ୍ୟତ୍ ॥**

(ଶ୍ରୀମଭା. ୧୧/୧୪/୧୪)

'ଯେ ନିଜର ଚିତ୍ତକୁ ମୋ' ଠାରେ ଅର୍ପଣ କରିଦେଇଛି, ସେ ମୋତେ ଛାଡ଼ି ବ୍ରହ୍ମାଙ୍କ ପଦ, ସ୍ୱର୍ଗର ରାଜ୍ୟ, ସମସ୍ତ ଭୂମଣ୍ଡଳର ଚକ୍ରବର୍ତ୍ତିତ୍ୱ, ପାତାଳ ଆଦି ଦେଶର ଆଧିପତ୍ୟ, ଅଣିମାଦି ଯୋଗସିଦ୍ଧି ତଥା ମୋକ୍ଷ-କିଛି ମଧ୍ୟ ଚାହେଁ ନାହିଁ !

ଏହା' ଉପରେ କେହି କହି ପାରନ୍ତି ଯେ ଏହା ତ ନାମୀଙ୍କ ସ୍ମରଣର କଥା । ଏଠାରେ ନାମର କି ପ୍ରସଙ୍ଗ ? ଏହାର ଉତ୍ତର ହେଉଛି - ନାମରୁ ହିଁ ନାମୀକୁ ଜାଣି ହୁଏ । ଆମେ ଯଦି ନିଜ ପିତାଙ୍କ ସ୍ୱରୂପକୁ ସ୍ମରଣ କରୁ, ତାହେଲେ 'ପିତା' ଏହି ସମ୍ବନ୍ଧନାମର ସ୍ମରଣ ପ୍ରଥମେ ହୁଏ; ନାମ ବିନା ନାମୀର କଳ୍ପନା ହୋଇ ନ ପାରେ । ନାମ ହିଁ ନାମୀର ପରିଚୟ କରାଏ । ଗୋସାଇଁ ମହାରାଜ ବହୁତ ହିଁ ସୁନ୍ଦର କହିଛନ୍ତି -

**ଦେଖିଅହିଁ ରୂପ ନାମ ଆଧୀନା । ରୂପ ଗ୍ୟାନ ନହିଁ ନାମ ବିହୀନା ॥**
**ରୂପ ବିସେଷ ନାମ ବିନୁ ଜାନେଂ । କରତଲଗତ ନ ପରହିଂ ପହିଚାନେଂ ॥**

ରୂପ ନାମର ଅଧୀନ ହିଁ ଦେଖାଯାଏ । କାହାରି ହାତରେ ହୀରା ଅଛି; କିନ୍ତୁ ଯେପର୍ଯ୍ୟନ୍ତ ସେହି ହୀରାକୁ ସେ ହୀରା ବୋଲି ବୁଝେ ନାହିଁ, ସେପର୍ଯ୍ୟନ୍ତ ତାକୁ ରୂପର ଜ୍ଞାନ ହୁଏନାହିଁ । ରୂପର ଜ୍ଞାନ ହେବା ବିନା ସେ ତାହାର ମୂଲ୍ୟ ଜାଣେ ନାହିଁ । ଯେବେ କୌଣସି ପାରଖି ଠାରୁ ସେ ତା'ର ନାମ 'ହୀରା' ବୋଲି ଜାଣି ନିଏ, ତେବେ ସେହି କ୍ଷଣ ତାକୁ ତା'ର ବହୁମୂଲ୍ୟତାର ଜ୍ଞାନ ହୁଏ । ଏଥିରୁ ଏହା ସିଦ୍ଧ ହେଲା ଯେ ନାମର ସ୍ମରଣ ବ୍ୟତୀତ ନାମୀର ଜ୍ଞାନ ହୁଏ ନାହିଁ । ନାମକୁ କିଛି ଦିନ ସ୍ମରଣ କଲା ପରେ, ସାଧକର ଅନ୍ତରରେ ଯେଉଁ ଏକ ଆନନ୍ଦସରୋବର ଆବଦ୍ଧ ହୋଇ ପଡ଼ିଥାଏ, ତାହାର ବନ୍ଧ ଭାଙ୍ଗିଯାଏ, ତାହା ସୁଖର ପ୍ରବଳ ଧାରାରେ ବହି ଯାଏ । ସେ ସମୟରେ ସେହି ନାମରସର ଆଗେ ତାକୁ ସବୁ ରସ ଫିକା ଜଣାଯାଏ । ସେ ଜୋରରେ ଡାକି ଉଠେ -

**ପାୟୋ ନାମ ଚାରୁ ଚିଂତାମନି ଉର କର ତେଂ ନ ଖସୈହୌଂ ।**

ନାମର ସୁନ୍ଦର ଚିନ୍ତାମଣି ମୋତେ ମିଳିଗଲା । ବର୍ତ୍ତମାନ ମୁଁ ଏହାକୁ ହୃଦୟରୁ ଓ ହାତରୁ କେବେ ଯିବାକୁ ଦେବି ନାହିଁ । ସେ ଏପରି କାହିଁକି କହେ ? ଏଇଥିପାଇଁ କି ତାକୁ ଏଥିରେ ସେହି ସୁଖ ମିଳେ, ଯାହା ବଡ଼ ବଡ଼ ବିଷୟୀ ସମ୍ରାଟମାନଙ୍କୁ ମଧ୍ୟ ଜୁଟେ ନାହିଁ ।

ଭଗବାନ୍ କହୁଛନ୍ତି :-

**ମଯ୍ୟର୍ପିତାତ୍ମନଃ ସଭ୍ୟ ନିରପେକ୍ଷସ୍ୟ ସର୍ବତଃ ।**
**ମୟାଽଽତ୍ମନା ସୁଖେ ଯତ୍ତଦ୍ କୁତଃ ସ୍ୟାଦ୍ ବିଷୟାତ୍ମନାମ୍ ॥**

(ଶ୍ରୀମଦ୍ଭା. ୧୧/୧୪/୧୨)

'ମୋ ଠାରେ ଚିତ୍ତ ଲଗାଇଥିବା ଓ ସମସ୍ତ ବିଷୟଭୋଗର ଅପେକ୍ଷା ଛାଡ଼ିଥିବା ଭକ୍ତକୁ ମୋ ଠାରୁ ଯେଉଁ ପରମ ସୁଖ ମିଳେ, ସେହି ସୁଖ ବିଷୟାସକ୍ତଚିତ୍ତ ଲୋକଙ୍କୁ କେଉଁଠୁ ମିଳି ପାରିବ ?

ମନ ଯେତିକି ବିଷୟ ଚିନ୍ତନ କରେ, ସେତିକି ହିଁ ସଂସାରରେ ଆବଦ୍ଧ ହୁଏ; କାରଣ ବିଷୟ-ଚିନ୍ତନରୁ ହିଁ କ୍ରମଶଃ ସଙ୍ଗ, କାମ, କ୍ରୋଧ, ମୋହ, ସ୍ମୃତିଭ୍ରଂଶ, ବୁଦ୍ଧିନାଶ ଓ ଶେଷରେ ସର୍ବନାଶ ହୁଏ । ମନରେ ପ୍ରଥମେ-ପ୍ରଥମେ ଯେବେ ଶିହରଣ ଉଠେ ତ ତାହା ତରଙ୍ଗସଦୃଶ ହୁଏ, କିନ୍ତୁ ତାହାହିଁ ପରେ ପରେ ସମୁଦ୍ର ହୋଇଯାଏ । ଏଣୁ ନିଜର କଲ୍ୟାଣ ଚାହୁଁଥିବା ଲୋକେ ବିଷୟମାନଙ୍କ ବଦଳରେ ଧୀରେ-ଧୀରେ ଭଗବାନଙ୍କୁ ମନରେ ସ୍ଥାନ ଦିଅନ୍ତୁ । ଉପର୍ଯୁକ୍ତ ଯୁକ୍ତିଗୁଡ଼ିକ ଦ୍ୱାରା ନାମ ସ୍ମରଣ କରନ୍ତୁ । ଗୋଟିଏ ଦୃଢ଼ ଅଭ୍ୟାସକୁ ନାଶ କରିବା ପାଇଁ ତାର ବିରୋଧୀ ଅନ୍ୟ ଗୋଟିଏ ଅଭ୍ୟାସ ଆବଶ୍ୟକ ହୁଏ । ଅନଭ୍ୟସ୍ତ ବିଷୟର ଚିନ୍ତନରେ ପ୍ରଥମେ-ପ୍ରଥମେ ମନ ଅଧୀର ହୁଏ, ଆକୁଳ ହୁଏ ଓ ବହୁତ ବିଗିଡ଼ି ଯାଏ ; କିନ୍ତୁ ଦୃଢ଼ତାର ସହ ଅଭ୍ୟାସ କରି ଚାଲିଲେ ଶେଷରେ ତାହା ତଦାକାର ହୋଇଯାଏ । ଏଣୁ ଜିଦ୍ କରି ମଧ୍ୟ ମନକୁ ପରମାତ୍ମାଙ୍କ ନାମ-ସ୍ମରଣରେ ଲଗାଇବା ଉଚିତ । ନିୟମ କରିନେବା ଉଚିତ କି ମନରେ ଆମେ ଏତିକି ନାମ-ଜପ ପ୍ରତିଦିନ ଅବଶ୍ୟ କରିବା । ଅତି କମ୍‌ରେ ସେତିକି ଜପ ତ ପ୍ରତିଦିନ ହୋଇଯିବା ଉଚିତ । ସ୍ମରଣଦ୍ୱାରା ହିଁ ମନରେ ପ୍ରେମର ଉତ୍ପତ୍ତି ହୁଏ । ଜଣେ ସ୍ତ୍ରୀ ନିଜର ବାପଘରେ ଅଛି, ତା'ର ସ୍ୱାମୀ ସେଠାରେ

ନାହିଁ । ପତିର ରୂପ ତା'ଆଗରେ ନାହିଁ; କିନ୍ତୁ ପତିର ନାମ-ସ୍ମରଣ ହେବା କ୍ଷଣି ତା' ମନ ପ୍ରେମରେ ପୂରି ଯାଏ ।

ନାମ-ସ୍ମରଣ କରୁ କରୁ ଯେବେ ସ୍ମରଣର ଅଭ୍ୟାସ ପଡ଼ିଯାଏ, ତେବେ ତ ମନ କେବେ ତାକୁ ଛାଡ଼େ ନାହିଁ । ସ୍ମରଣଦ୍ୱାରା କ'ଣ ନ ହୁଏ ? ଯଦି ଅନ୍ତକାଳରେ କାହାରି ପରମାତ୍ମାଙ୍କ ନାମସ୍ମରଣ ହୋଇଯାଏ, ତାହେଲେ ବିଷୟ ମୋକ୍ଷତା'ରେ ଟିକିଏ ହେଲେ ସନ୍ଦେହ ରହେ ନାହିଁ । ଭଗବାନ୍ ଅର୍ଜୁନକୁ କହିଛନ୍ତି -

**ଅନ୍ତକାଳେ ଚ ମାମେବ ସ୍ମରନ୍ମୁକ୍ତ୍ୱା କଳେବରମ୍ ।**
**ଯଃ ପ୍ରୟାତି ସ ମଦ୍ଭାବଂ ଯାତି ନାସ୍ତ୍ୟତ୍ର ସଂଶୟଃ ॥**

(ଗୀତା ୮/୫)

ଯେଉଁ ପୁରୁଷ ମୃତ୍ୟୁସମୟରେ ମୋତେ ସ୍ମରଣ କରି କରି ଶରୀର ତ୍ୟାଗ କରି ଚାଲିଯାଏ ସେ ମୋତେ ହିଁ ପ୍ରାପ୍ତ ହୁଏ, ଏଥିରେ କୌଣସି ସନ୍ଦେହ ନାହିଁ ।' କିନ୍ତୁ ଶେଷସମୟରେ ପରମାତ୍ମାଙ୍କ ସ୍ମୃତି କାହାକୁ ହୁଏ ? ଯେ **'ସଦା ତଦ୍ଭାବଭାବିତଃ'** ହୁଏ, ଅର୍ଥାତ୍ ଲୋକ ସର୍ବଦା ଯେଉଁ ଭାବ ଚିନ୍ତନ କରେ, ଶେଷସମୟରେ ମଧ୍ୟ ପ୍ରାୟ ତାହାରି ସ୍ମରଣ ହୋଇଥାଏ । ଏଇଥିପାଇଁ ଭଗବାନ ଅର୍ଜ୍ଜୁନକୁ କହିଲେ - ହେ ପାର୍ଥ !

**ତସ୍ମାତ୍ ସର୍ବେଷୁ କାଳେଷୁ ମାମନୁସ୍ମର ଯୁଧ୍ୟ ଚ ।**
**ମୟ୍ୟର୍ପିତମନୋବୁଦ୍ଧିର୍ମାମେବୈଷ୍ୟସ୍ୟସଂଶୟମ୍ ॥**

(ଗୀତା ୮/୭)

'ତୁ ସଦା-ସର୍ବଦା ମୋତେ ସ୍ମରଣ କରି କରି ଯୁଦ୍ଧ କର, ଏହି ପ୍ରକାରେ ମୋ ଠାରେ ମନ-ବୁଦ୍ଧି ଅର୍ପିତ ହୋଇ ଯିବା ଦ୍ୱାରା ତୁ ନିଃସନ୍ଦେହ ମୋତେ ହିଁ ପ୍ରାପ୍ତ ହେବୁ ।'

ବ୍ରାହ୍ମଣ ହେଲେ ବେଦାଧ୍ୟୟନ କରୁ, କ୍ଷତ୍ରିୟ ହେଲେ ଯୁଦ୍ଧକୁ ଯାଉ, ବୈଶ୍ୟ ହେଲେ ବେପାର କରୁ, ଆଉ ଶୂଦ୍ର ହେଲେ ସେବା କରୁ । ସମସ୍ତେ ନିଜ ନିଜର କାମ କରନ୍ତୁ, କିନ୍ତୁ କରନ୍ତୁ, ତାକୁ ସ୍ମୃତିରେ ରଖି; ଯେପରି କି ଦୁରାଚାରିଣୀ ଉପପତିକୁ, ସତୀ ପତିକୁ, କୃପଣ ଧନକୁ ଓ

ବିଷୟୀ ବିଷୟକୁ ନିରନ୍ତର ମନେ ରଖେ । ପାଣି ବୋହୁଥିବା ସ୍ତ୍ରୀ ଲୋକଟିଏ ଦୁଇଟି ମାଠିଆ ମୁଣ୍ଡରେ ରଖି ଗ୍ଲେ,ରାସ୍ତାରେ ଅନ୍ୟମାନଙ୍କ ସହିତ କଥାବାର୍ତ୍ତା ବି କରେ, କିନ୍ତୁ ତାର ସ୍ମୃତି ଥାଏ, ତା' ମୁଣ୍ଡରେ ରହିଥିବା, ସେଇ ମାଠିଆ ଦୁଇଟି ଉପରେ ! ଏହିପରି କ୍ଷଣମାତ୍ର ସ୍ମରଣରେ ହିଁ ବହୁତ ବଡ଼ କାମ ହୋଇଥାଏ । ଆଜିକାଲି ଲୋକେ ମାଳା ଗଡ଼ାଉଛନ୍ତି, ହାତ ରହୁଛି ଗୋମୁଖୀରେ, କିନ୍ତୁ ମନ ବିଷୟରେ ଭ୍ରମୁଛି । ମନ୍ତ୍ର-ଜପରେ ଗୌଣତା ସ ବିଷୟା ସମୂହରେ ମୁଖ୍ୟତା ରହୁଛି । ଏହା ଦ୍ୱାରା ଜପ କରୁ-କରୁ ମଝିରେ ମଝିରେ ସେମାନେ କହି ଉଠୁଛନ୍ତି ।

ଜଣେ ସେଠ ଜପ କରୁଥିଲେ, ମାଳା ହାତରେ ଥିଲା, ମୁହଁରେ ମଧ୍ୟ ମନ୍ତ୍ର ଉଚ୍ଚାରଣ କରୁଥିଲେ; କିନ୍ତୁ ତାଙ୍କ ମନ ଆହୁରି ଅନେକ କଥାର ଚିନ୍ତାରେ ଲାଗି ରହିଥିଲା । ପୁତ୍ର ମଧ୍ୟ ପାଖରେ ବସି ସଂଧ୍ୟା କରୁଥିଲା । ସେଠଜୀ ମାଳା ଗଡ଼ାଉ-ଗଡ଼ାଉ ମଝିରେ କହି ଉଠିଲେ 'ଆରେ ! କାଲିର ସମସ୍ତ ଗ୍ରାହକଙ୍କର ଟଙ୍କା ଆସିଗଲା ? ରାମ, ରାମ, ରାମ, ରାମ । ଦେଖ ! ତୁ ବଡ଼ ମୂର୍ଖ ଅଟୁ । ବେପାରରେ ମଧ୍ୟ ସତ୍ୟତାରେ କ'ଣ ରୋଜଗାର ହୁଏ ? ରାମ ରାମ ରାମ ରାମ ! ହାତୀର ଦେଖାଇବା ଦାନ୍ତ ଅଲଗା ଓ ଖାଇବା ଦାନ୍ତ ଅଲଗା - ରାମ ରାମ ରାମ ରାମ ! ମାପ-ଓଜନରେ ଟିକିଏ ଦୃଢ଼ତା ରଖିବା ଉଚିତ - ରାମ ରାମ ରାମ ରାମ । ମୁଁ ତ ମରିଯିବି, ପୁଣି ତୋ କାମ କିପରି ଗ୍ଲିବ ? ରାମ ରାମ ରାମ ରାମ ।'

ଏହିଭଳି ରାମ ରାମ କରୁଥିବା କପଟୀ ଲୋକଙ୍କ ହେତୁ ହିଁ ନାମ ଉପରେ ଲୋକଙ୍କ ରୁଚି କମି ଯାଉଛି; କିନ୍ତୁ ନାମପ୍ରେମୀମାନଙ୍କୁ ଏ ଆଡ଼କୁ ଧ୍ୟାନ ନ ଦେବା ଉଚିତ । ଯଦି କୌଣସି ମୂର୍ଖ ରତ୍ନର ଦୁରୁପଯୋଗ କରେ, ତାହେଲେ ଏହାଦ୍ୱାରା ରତ୍ନର ରତ୍ନପଣିଆ ଓ ତାର ବହୁମୂଲ୍ୟତା କ'ଣ କମିଯାଏ ? କହିବାର ଅଭିପ୍ରାୟ କେବଳ ଏତିକି କି ଯେ ସ୍ମରଣ ଠିକ୍ ଭାବେ ହେଲେ ଶୀଘ୍ର ଫଳପ୍ରଦ ହୁଏ ।

ସ୍ମରଣ ପରେ ଆସୁଛି -

## କୀର୍ତନ

କୀର୍ତ୍ତନ ଜୋରଜୋର ହୁଏ ଓ ଏଥିରେ କୌଣସି ହିସାବ ରଖା ଯାଏ ନାହିଁ । ଏହାହିଁ ଜପ ଓ କୀର୍ତ୍ତନ ମଧ୍ୟରେ ଭେଦ, ଜପ ଯେତେ ଗୁପ୍ତ

ହୁଏ, ସେତେ ହିଁ ତାର ଅଧିକ ମହତ୍ୱ ରହେ; କିନ୍ତୁ କୀର୍ତ୍ତନ ଯେତେ ଗଗନ ଭେଦୀ ସ୍ୱରରେ ହୁଏ; ସେତିକି ତାର ମହତ୍ତ୍ୱ ବଢ଼େ । କୀର୍ତ୍ତନ ସହ ସଂଗୀତ ର ସଂପର୍କ ଅଛି । କୀର୍ତ୍ତନରେ ପ୍ରଥମେ-ପ୍ରଥମ ସ୍ୱର ସମୂହର ଏକତାନତା କରିବାକୁ ପଡ଼େ । କୀର୍ତ୍ତନର କେତେକ ପ୍ରକାର ଅଛି ।

(୧) ଏକୁଟିଆ ଭଗବାନଙ୍କର କୌଣସି ନାମକୁ ଆର୍ତଭାବରେ ଡାକି ଉଠିବ । ଯେପରି ଦ୍ରୌପଦୀ ଓ ଗଜରାଜ ଆଦି ଡାକି ଥିଲେ ।

(୨) ଏକୁଟିଆ ଭଗବାନଙ୍କର ଗୁଣ ନାମ, କର୍ମନାମ, ଜନ୍ମନାମ ଓ ସମ୍ବନ୍ଧନାମସମୂହର ବିସ୍ତାରପୂର୍ବକ ବା ସଂକ୍ଷେପରେ ଜୋର-ଜୋରରେ ଉଚ୍ଚାରଣ କରିବା ।

(୩) ଭଗବାନଙ୍କର କୌଣସି ଚରିତ୍ର ଅଥବା ଭକ୍ତ ଚରିତ୍ରର କୌଣସି କଥାଭାଗର ଗାନ କରିବା ଓ ମଝିରେ-ମଝିରେ ନାମ କୀର୍ତ୍ତନ କରିବା ।

(୪) କିଛି ଲୋକ ଏକାଠି ହୋଇ ଏକସ୍ୱରରେ ନାମ-କୀର୍ତ୍ତନ କରିବା ।

(୫) ଅଧିକ ଲୋକ ଏକସାଙ୍ଗରେ ମିଳି ଏକ ସ୍ୱରରେ ନାମ କୀର୍ତ୍ତନ କରିବା ।

ଏହା ବ୍ୟତୀତ ଆହୁରି ଅନେକ ଭେଦ ମଧ୍ୟ ଅଛି । ଯେବେ ମନୁଷ୍ୟ କୌଣସି ଦୁଃଖରେ ଅଧୀର-ଅସ୍ଥିର ହୋଇ ଜଗତର ସହାୟକଙ୍କ ଠାରୁ ନିରାଶ ହୋଇ ଭଗବାନଙ୍କ ଠାରୁ ଆଶ୍ରୟ ଯାଚନା କରି ଜୋରରେ ତାଙ୍କ ନାମ ନେଇ ଡାକେ, ତେବେ ଭଗବାନ ସେହି ମୁହୂର୍ତ୍ତରେ ଭକ୍ତର ଇଚ୍ଛାର ଅନୁକୂଳ ସ୍ୱରୂପ ଧାରଣ କରି ତାକୁ ଦର୍ଶନ ଦିଅନ୍ତି ଓ ତା'ର ଦୁଃଖ ଦୂରକରି ଦିଅନ୍ତି । ଶ୍ରୀଭଗବାନଙ୍କର ରାମାବତାର ଓ କୃଷ୍ଣାବତାରରେ ଅସୁରମାନଙ୍କ ଦ୍ୱାରା ପୀଡିତ ସୁର-ମୁନିମାନେ ମିଳିତ ହୋଇ ପ୍ରଥମେ ଆର୍ତସ୍ୱରରେ କୀର୍ତନ ହିଁ କରିଥିଲେ ।

ଯେଉଁ ସମୟରେ ଏକବସ୍ତ୍ରା ଦେବୀ ଦ୍ରୌପଦୀ କୌରବଙ୍କ ଦରବାରରେ କେଶ ଧରି ଆଣା ଯାଇଛି, ଦୁର୍ଯ୍ୟୋଧନ ତା'ର ବସ୍ତ୍ରହରଣ ନିମିତ୍ତ ଅମିତ ବଳଶାଳୀ ଦୁଃଶାସନକୁ ଆଜ୍ଞା ଦେଇଛି, ସେ ସମୟରେ ଦ୍ରୌପଦୀକୁ ଏ କଳ୍ପନା ହେଉ ନାହିଁ କି-ଏହି ବଡ଼ ବଡ଼ ବୁଢ଼ା ଲୋକେ, ଧର୍ମଜ୍ଞ, ବିଦ୍ୱାନ ଓ ବୀରମାନଙ୍କ ସଭାରେ ଏପରି ଅନ୍ୟାୟ ହେବ; କିନ୍ତୁ ଯେତେବେଳେ ଦୁଃଶାସନ ପ୍ରକୃତରେ ବସ୍ତ୍ର ଟାଣିବାରେ ଲାଗୁଛି,

**********************************************

ସେତେବେଳେ ଦ୍ରୌପଦୀ ଅଧୀର ଓ ବିଚଳିତ ହୋଇ ରାଜା ଧୃତରାଷ୍ଟ୍ର, ପିତାମହ ଭିଷ୍ମ, ଗୁରୁ ଦ୍ରୋଣାଚାର୍ଯ୍ୟ ଆଦି ତଥା ନିଜର ବୀର ପାଞ୍ଚ ପତିମାନଙ୍କର ସହାୟତା ଗୃହୁଁଛି; କିନ୍ତୁ ଭିନ୍ନ-ଭିନ୍ନ କାରଣରୁ ଯେବେ କେହି ମଧ୍ୟ ସେ ସମୟରେ ଦ୍ରୌପଦୀକୁ ମୁକୁଳାଇବା ପାଇଁ ପ୍ରସ୍ତୁତ ହେଲେ ନାହିଁ, ସେତେବେଳେ ସେ ସମସ୍ତଙ୍କ ଠାରୁ ନିରାଶ ହୋଇ ଯାଇଛି । ସମସ୍ତଙ୍କ ଠାରୁ ନିରାଶ ହେବା ପରେ ହିଁ ଭଗବାନଙ୍କର ଅନନ୍ୟ ସ୍ମୃତି ଜାଗି ଉଠିଛି । ଦୁଃଶାସନ ଖୁବ୍ ଜୋରରେ ଶାଢ଼ୀ ଟାଣୁଛି । ଆଉ ଗୋଟିଏ ଥର ବସ୍ତ୍ର ଆକର୍ଷଣ କରିଥିଲେ ଦ୍ରୌପଦୀଙ୍କର ଲଜ୍ଜା ଯାଇ ପାରେ । ଦ୍ରୌପଦୀର ସେ ସମୟର ଦୀନ ଅବସ୍ଥା ଆମ୍ଭମାନଙ୍କ କଳ୍ପନାରେ ସଂପୂର୍ଣ୍ଣ ଆସି ନ ପାରେ । ମହଲ ଭିତରେ ରହୁଥିବା ଏକ ରାଜରାଣୀ, ପୃଥିବୀର ସବୁଠୁଁ ବଡ ପାଞ୍ଚବୀରଙ୍କ ଦ୍ୱାରା ରକ୍ଷିତା କୁଳ ରମଣୀ ରଜସ୍ୱଳା-ଅବସ୍ଥାରେ ବଡ଼-ବଡ଼ ବୁଢ଼ା, ତଥା ବୀର ପତିମାନଙ୍କ ଆଗରେ ନଗ୍ନ କରାଯାଉଛି, ସେ ସମୟରେ ତାକୁ କେତେ ମର୍ମବେଦନା ହୋଇଥିବ, ଏହି କଥାକୁ ସେହି କେବଳ ଜାଣେ, କବିମାନଙ୍କ କଲମ ସମ୍ଭବତଃ କିଛି କଳ୍ପନା କରିପାରେ । ହେଉ, ଦ୍ରୌପଦୀ ନିରାଶ ହୋଇ ଭଗବାନଙ୍କୁ ସ୍ମରଣ କଲା ଓ ସେ ବ୍ୟାକୁଳ ହୋଇ ଡକା ପକାଇଲା -

**ଗୋବିନ୍ଦ ଦ୍ୱାରକାବାସିନ୍ କୃଷ୍ଣ ଗୋପିଜନପ୍ରିୟ ।**
**କୌରବୈଃ ପରିଭୂତାଂ ମାଂ କିଂ ନ ଜାନାସି କେଶବ ॥**
**ହେ ନାଥ ହେ ରାମାନାଥ ବ୍ରଜନାଥାର୍ତିନାଶନ ।**
**କୌରବାର୍ଣ୍ଣବମଗ୍ନାଂ ମାମୁଦ୍ଧରସ୍ୱ ଜନାର୍ଦନ ॥**
**କୃଷ୍ଣ କୃଷ୍ଣ ମହାଯୋଗିନ୍ ବିଶ୍ୱାତ୍ମନ୍ ବିଶ୍ୱଭାବନ ।**
**ପ୍ରପନ୍ନାଂ ପାହି ଗୋବିନ୍ଦ କୁରୁମଧ୍ୟେଽବସୀଦତୀମ୍ ॥**

'ହେ ଦ୍ୱାରକାବାସୀ ଗୋବିନ୍ଦ ! ହେ ଗୋପିଜନ ପ୍ରିୟ କୃଷ୍ଣ ! କ'ଣ ମୋତେ କୌରବ ଦ୍ୱାରା ପରିବେଷ୍ଟିତ ତୁ ଜାଣିନାହୁଁ ? ହେ ନାଥ, ରମାନାଥ, ବ୍ରଜନାଥ, ଦୁଃଖନାଶକ ଜନାର୍ଦ୍ଧନ ! କୌରବରୂପୀ ସାଗରରେ ବୁଡି ଯାଉଥିବା ମୋତେ ଉଦ୍ଧାର କର ! ହେ ବିଶ୍ୱାତ୍ମା ! ବିଶ୍ୱଭାବନ କୃଷ୍ଣ ! ହେ ମହାଯୋଗୀ କୃଷ୍ଣ ! କୌରବଙ୍କ ମଧ୍ୟରେ ହତାଶ ହୋଇ ତୋରି ଶରଣରେ ଆସିଥିବା ମୋତେ ତୁ ରକ୍ଷାକର !'

ବ୍ୟାକୁଳତାପୂର୍ଣ୍ଣ ନାମ କୀର୍ତ୍ତନର ଫଳ ତତ୍କାଳ ହିଁ ହୁଏ, ଯେତେବେଳେ

************************************************

ସମସ୍ତଙ୍କ ଆଶା ଛାଡ଼ି କେବଳ ମାତ୍ର ପରମାତ୍ମାଙ୍କ ଉପରେ ଭରସା ରଖିତାଙ୍କୁ ଏକମନରେ କେହି ଡାକେ, ସେତେବେଳେ ସେହି କରୁଣା ସିନ୍ଧୁ ଭଗବାନ ଗୋଟିଏ ମୂହୂର୍ତ୍ତ ମଧ୍ୟ ନିଶ୍ଚିନ୍ତ ଓ ସ୍ଥିର ହୋଇ ରହି ପାରେ ନା । ତାଙ୍କୁ ଭକ୍ତର କାମ ପାଇଁ ଦୌଡ଼ିବାକୁ ପଡ଼େ । ନାମ ଡାକରା ପାଇବା କ୍ଷଣି ଦ୍ରୌପଦୀଙ୍କ ବସ୍ତ୍ରରେ ଭଗବାନ ଆସି ପ୍ରବେଶ କଲେ, ବସ୍ତ୍ରାବତାର ହୋଇ ଗଲା ! ବସ୍ତ୍ରର ଗଦା ଲାଗି ଗଲା । ଦଶ ହଜାର ହାତୀଙ୍କ ସମାନ ବଳଧାରୀ ବୀର ଦୁଃଶାସନର ଦୁଇ ବାହୁ ବିଦୀର୍ଣ୍ଣ ହେବାରେ ଲାଗିଲା - **'ଦସ ହଜାର ଗଜ ବଲ ଘଟ୍ୟୋ, ଘଟ୍ୟୋ ନ ଦମ୍ ଗଜ ଚୀର !'** ଭକ୍ତ ସୂରଦାସ କହୁଛନ୍ତି -

**ଦୁଃଶାସନକୀ ଭୁଜା ଥକିତ ଭଇ ବସନରୂପ ଭଏ ସ୍ୟାମ !**

ଶାଢ଼ୀର ଶେଷ ସୀମା ଆସିଲା ନାହିଁ ! ଜଣେ କବି କହୁଛନ୍ତି -

**ପାୟ ଅନୁସାସନ ଦୁଃହସାସନ କୈ କୋପ ଧାୟୋ,**
**ଦ୍ରୁପଦସୁତାକୋ ଚୀର ଗହେ ଭୀର ଭାରୀ ହୈ ।**
**ଭୀଷମ, କରନ, ଦ୍ରୋନ ବୈଠେ ବ୍ରତଧାରୀ ତହାଁ,**
**କାମିନୀକୀ ଓର କାହୂ ନେକ ନ ନିହାରୀ ହୈ ॥**
**ସୁନିକୈ ପୁକାର ଧାୟେ ଦ୍ୱାରିକାତେ ଯଦୁରାଈ,**
**ବାଢ଼ତ ଦୁକୂଳ ଖୈଂଚେ ଭୁଜବଲ ଭାରୀ ହୈ ।**
**ସାରୀ ବୀଚ ନାରୀ ହୈ କି ନାରୀ ବୀଚ ସାରୀ ହୈ,**
**କି ସାରୀ ହୀ କି ନାରୀ ହୈ କି ନାରୀ ହୀ କି ସାରୀ ହୈ ॥**

ଦୁଃଶାସନ ଥକିଯାଇ ମୁହଁ ତଳକୁ କରି ବସିଗଲା, ଦୌପଦୀର ଲଜ୍ଜା ଓ ତାହାର ମାନ ରହିଗଲା । ଭଗବନ୍ନାମ-କୀର୍ତ୍ତନର ଫଳ ପ୍ରତ୍ୟକ୍ଷ ହୋଇଗଲା !

ଜୟ ଭଗବାନଙ୍କ ପବିତ୍ର ନାମର ଜୟ ହେଉ !

ଏହିଭଳି ଗଜରାଜର କଥା ପ୍ରସିଦ୍ଧ ଅଟେ । ସେଠାରେ ମଧ୍ୟ ଏହି ଭଳି ବ୍ୟାକୁଳତାପୂର୍ଣ୍ଣ ନାମର ଆହ୍ୱାନ ଥିଲା । ଯଦି ଆଜି ମଧ୍ୟ କେହି ସାଧାରଣ ଭାବେ ପ୍ରକୃତ ମନରେ ବ୍ୟାକୁଳ ହୋଇ ଆହ୍ୱାନ କରେ ତାହେଲେ ଏହା ନିଶ୍ଚୟ ଅଟେ କି ତା'ର ଲୋକ-ପରଲୋକ ଉଭୟଙ୍କର ସିଦ୍ଧି ନିଶ୍ଚିତ ରୂପେ ହୋଇପାରେ । ଏହି କଥାର କେତେକ ଲୋକଙ୍କର କେତେ ପ୍ରକାରର

ପ୍ରତ୍ୟକ୍ଷ ଅନୁଭବ ଅଛି । ଏତଏବ ପ୍ରାତଃକାଳ, ସାୟଂକାଳ, ରାତିରେ ଶୋଇବା ସମୟରେ ଭଗବନ୍ନାମର କୀର୍ତନ ଅବଶ୍ୟ କରିବା ଉଚିତ । ଯେତେଦୂର ହୋଇପାରେ କୀର୍ତନ ନିଷ୍କାମ ଏବଂ କେବଳ ପ୍ରେମଭାବରେ ହିଁ କରିବା ଉଚିତ ଅଟେ ।

ଏହା ତ ବ୍ୟକ୍ତିଗତ ନାମ-କୀର୍ତନର କଥା ହେଲା । ଏହାପରେ ସମୁଦାୟରେ ନାମ-କୀର୍ତନର ଉପାୟ କୁହାଯାଉଅଛି । ମହାରାଷ୍ଟ୍ର ଓ ଗୁଜୁରାଟ ପ୍ରଦେଶରେ କୀର୍ତନକାରଙ୍କର ଭିନ୍ନ ସମୁଦାୟ ଅଛି, ଯେଉଁମାନେ ହରିଦାସ ଭାବେ କଥିତ ଅଟନ୍ତି । ଏହି ଲୋକେ ସମୟେ ସମୟେ ମନ୍ଦିର, ଧର୍ମସଭା ଓ ଉତ୍ସବଗୁଡିକ ଅବସରରେ ଡକା ଯାଆନ୍ତି, ଏମାନଙ୍କର କୀର୍ତନ ବଡ଼ ସୁନ୍ଦର ହୁଏ, ଭଗବାନଙ୍କର କୌଣସି ଲୀଳା-କଥାକୁ ଅଥବା ଭକ୍ତମାନଙ୍କର କୌଣସି ଚରିତ୍ରକୁ ନେଇ ଏମାନେ କୀର୍ତନ କରନ୍ତି । ଆରମ୍ଭରେ କୌଣସି ଭକ୍ତର କୌଣସି ଗୋଟିଏ ଶ୍ଳୋକ ବା ପଦ ଗାଆନ୍ତି ଓ ତାହାରି ଉପରେ ତାଙ୍କର ସଂପୂର୍ଣ୍ଣ କୀର୍ତନ ଚ୍ଚଲେ, ଶେଷରେ ସେହି ଶ୍ଳୋକ ବା ପଦ ସହିତ କୀର୍ତନ ସମାପ୍ତ କରାଯାଏ । ଆରମ୍ଭରେ, ଶେଷରେ ଓ ମଝିରେ-ମଝିରେ ହରି-ନାମର ଧ୍ୱନି କରାଯାଏ, ଯେଉଁଥିରେ ଶ୍ରୋତାଗଣ ମଧ୍ୟ ପାଳି ଧରନ୍ତି । ଏମାନେ ଗାଇବା ବଜାଇବା ମଧ୍ୟ ଜାଣନ୍ତି ଓ କମ୍ରୁ କମ୍ ହାରମୋନିୟମ ତଥା ତବଲାବାଦନ ସହିତ ଏମାନଙ୍କର କୀର୍ତନ ହୁଏ । ମଝିରେ-ମଝିରେ ସୁନ୍ଦର ପଦ ମଧ୍ୟ ଗାଆନ୍ତି । ଏଥିରେ ଦୋଷ ଏହାଯେ - ଏହିଭଳି ଅଧିକାଂଶ କୀର୍ତନକାରଙ୍କ ଧ୍ୟାନ ଭଗବନ୍ନାମ ଅପେକ୍ଷା ସୁର ଆଳାପ ଆଡ଼କୁ ଅଧିକ ରହେ । ଗୁଜୁରାଟରେ ବିବାହ ଅବସରରେ ଦିନେ ହରି କୀର୍ତନ କରାଇବାର ପ୍ରଥା ଅଛି, ଯାହାକି ଖୁବ୍ ସୁନ୍ଦର ଜଣା ପଡ଼େ । ଅନ୍ୟ ଅନେକ ପ୍ରମାଦରେ ଧନର ନାଶ କରାଯାଏ, ସେଠାରେ ଯଦି ଏହି ପ୍ରଥାର ପ୍ରଚ୍ଚର କରାଯାଏ, ତାହେଲେ ଲୋକଙ୍କ ମନୋରଂଜନ ସହ ବଡ଼ ପାରମାର୍ଥିକ ଲାଭ ମଧ୍ୟ ହୋଇପାରେ । ଏହା ମଧ୍ୟ ଏକ ପ୍ରକାରର ସଂଘକୀର୍ତନ ଅଟେ ।

ଏହାପରେ ସେହି କୀର୍ତନ ଆସେ, ଯାହା ସର୍ବଶ୍ରେଷ୍ଠ ଅଟେ । ଯାହାର ଏହି ଯୁଗରେ ବିଶେଷ ପ୍ରଚ୍ଚର ମହାପ୍ରଭୁ ଶ୍ରୀ ଶ୍ରୀଗୌରାଙ୍ଗଦେବଙ୍କ କୃପାରୁ ହେଲା । ଏହି କୀର୍ତନର ପ୍ରକାର ଏହା ଅଟେ । ବହୁଲୋକେ ଗୋଟିଏ ସ୍ଥାନରେ ଏକତ୍ରିତ ହୁଅନ୍ତି । ଜଣେ ଲୋକ ଗୋଟିଏ ଥର ପ୍ରଥମେ ବୋଲେ,

**********************************************

ତା' ପଛେ ପଛେ ଆଉ ସମସ୍ତେ ବୋଲନ୍ତି, କିନ୍ତୁ ପରେ ସମସ୍ତେ ପୁଣି ଏକା ସାଙ୍ଗରେ ବୋଲିବାକୁ ଲାଗନ୍ତି । କୌଣସି ଗୋଟିଏ ନାମର ଧ୍ୱନିକୁ ଗୋଟିଏ ସ୍ୱରରେ ବୋଲନ୍ତି । ଢୋଲ, କରତାଳ, ଝାଁଝ ଓ ତାଳି ମାରି ମାରି ଗଳା ଖୋଲି, ଲାଜ ଛାଡ଼ି ବୋଲନ୍ତି । ଯେତେବେଳେ ସ୍ୱରଲହରୀ ଜମିଯାଏ, ସେତେବେଳେ ସ୍ୱରର ଧ୍ୟାନ ଆପେ ହିଁ ଛାଡ଼ିଯାଏ । କୀର୍ତ୍ତନକାରୀ ଦଳ ସ୍ୱରଲହରୀରେ ଉନ୍ମତ୍ତ ହୋଇଯାଆନ୍ତି ପୁଣି କୀର୍ତ୍ତନର ଉନ୍ମାଦରେ ନୃତ୍ୟ ଆରମ୍ଭ ହୁଏ । ଶିରା-ପ୍ରଶିରା ନାଚିଉଠେ, ଆଖିରୁ ଲୁହଧାରା ବହିଗଲେ, ଶରୀରଜ୍ଞାନ ନଷ୍ଟ ହୋଇଯାଏ । ନବଦ୍ୱୀପ, ବୃନ୍ଦାବନ, ଅଯୋଧ୍ୟା ଓ ପଣ୍ଢରପୁରରେ ଏପରି କୀର୍ତ୍ତନ ବହୁତ ହୋଇ ଆସୁଛି । ଏହି କୀର୍ତ୍ତନ କୌଣସି ଗୋଟିଏ ସ୍ଥାନରେ ମଧ୍ୟ ହୁଏ ଓ ବୁଲି-ବୁଲି ମଧ୍ୟ ହୁଏ । ଲେଖକର ବିଶ୍ୱାସ ଯେ ଏପରି ପ୍ରେମପୂର୍ଣ୍ଣ କୀର୍ତ୍ତନରେ କୀର୍ତ୍ତନର ନାୟକ ଭଗବାନ୍ ସ୍ୱୟଂ ଉପସ୍ଥିତ ରହନ୍ତି । ତାଙ୍କର ଏହି ପଣ ଅଛି -

**ନାହଂ ବସାମି ବୈକୁଣ୍ଠେ ଯୋଗିନାଂ ହୃଦୟେ ନ ଚ ।**
**ମଦ୍ଭକ୍ତା ଯତ୍ର ଗାୟନ୍ତି ତତ୍ର ତିଷ୍ଠାମି ନାରଦ ॥**

(ଆଦିପୁ. ୧୯/୩୫)

'ମୁଁ ବୈକୁଣ୍ଠରେ ବା ଯୋଗିମାନଙ୍କ ହୃଦୟରେ ରହେ ନାହିଁ । ମୋର ଭକ୍ତମାନେ ଯେଉଁଠାରେ ମିଳିତ ହୋଇ ମୋର ନାମଗାନ କରନ୍ତି, ମୁଁ ସେହି ଠାରେ ହିଁ ରହେ ।' ଏଭଳି କୀର୍ତ୍ତନରେ ପ୍ରେମର ସାଗର ଉଦ୍‌ବେଳିତ ହୁଏ, ଯାହାକି ସାରା ଦୁନିଆକୁ ପବିତ୍ର କରିଦିଏ । ଏହି କୀର୍ତ୍ତନରେ ବ୍ରାହ୍ମଣ-ଚଣ୍ଡାଳ ସମସ୍ତେ ସମ୍ମିଳିତ ହୋଇ ପାରନ୍ତି । ଯାହାଠି ପ୍ରେମ ଉପୁଜିଲା, ସେ ହିଁ ସମ୍ମିଳିତ ହୋଇଗଲା, କୌଣସି ବାଧା ନାହିଁ । **'ଜାତି-ପାଁତି ପୂଛୈ ନହିଁ କୋଈ । ହରିକୋ ଭଜୈ ସୋ ହରିକା ହୋଈ ॥'** ସେଇ ବଡ଼, ସେଇ ଶ୍ରେଷ୍ଠ ଯିଏ ପ୍ରେମରେ ନାମ-କୀର୍ତ୍ତନରେ ମତୁଆଲା ହୋଇ ନିଜେ ପବିତ୍ର ହୁଏ ଓ ଅନ୍ୟମାନଙ୍କୁ ପବିତ୍ର କରେ । ଏହି କୀର୍ତ୍ତନରୁ ଆହୁରି ଗୋଟିଏ ବଡ଼ ଲାଭ ହୁଏ । ହରିନାମର ତୁମୁଳ ଧ୍ୱନି ପାପୀ, ପତିତ, ପଶୁ, ପକ୍ଷୀ ପର୍ଯ୍ୟନ୍ତ ସବୁରି କାନକୁ ଯାଇ ସମସ୍ତଙ୍କୁ ପବିତ୍ର ଓ ପାପମୁକ୍ତ କରେ । ଯାହାର ଶ୍ରବଣରନ୍ଧ୍ର ଦେଇ ଭଗବନ୍ନାମ ତାର ହୃଦୟ ଭିତରକୁ

ଗ୍ଭଲିଯାଏ, ତାହାରି ପାପ-ମଳକୁ ତାହା ଧୋଇ ପକାଏ ।

ବାମନ ପୁରାଣର ଉକ୍ତି -

**ନାରାୟଣୋ ନାମ ନରୋ ନରାଣାଂ**
**ପ୍ରସିଦ୍ଧଗ୍ଭୌରଃ କଥିତଃ ପୃଥିବ୍ୟାମ୍ ।**
**ଅନେକଜନ୍ମାର୍ଜିତପାପସଞ୍ଚୟଂ**
**ହରତ୍ୟଶେଷଂ ଶ୍ରୁତମାତ୍ର ଏବ ॥**

'ପୃଥିବୀରେ ନାରାୟଣ-ନାମରୂପୀ ନର ପ୍ରସିଦ୍ଧ ଗ୍ଭେର ବୋଲି କଥିତ; କାରଣ ସେ କାନରେ ପ୍ରବେଶ କଲାକ୍ଷଣି ମନୁଷ୍ୟଙ୍କର ଅନେକ ଜନ୍ମାର୍ଜିତ ପାପରାଶିର ସମସ୍ତ ସଂଚୟକୁ ସମୂଳେ ଗ୍ଭେରାଇ ନିଏ ।

ଯେଉଁ ହରିନାମର ଏପରି ପ୍ରତାପ ଅଛି, ଯେଉଁ ଲୋକେ ଜିଭ ପାଇ ମଧ୍ୟ ତା'ର କୀର୍ତ୍ତନ ନ କରନ୍ତି, ସେମାନେ ନିଶ୍ଚିତ ହିଁ ମନ୍ଦଭାଗୀ ଅଟନ୍ତି -

**ଜିହ୍ୱାଂ ଲବ୍ଧ୍ୱାପି ଯୋ ବିଷ୍ଣୁଂ କୀର୍ତନୀୟଂ ନ କୀର୍ତୟେତ୍ ।**
**ଲବ୍ଧ୍ୱାପି ମୋକ୍ଷନିଃଶ୍ରେଣୀଃ ସ ନାରୋହତି ଦୁର୍ମତିଃ ॥**

'ଯେ ଜିହ୍ୱା ପାଇ ମଧ୍ୟ କୀର୍ତନୀୟ ଭଗବନ୍ନାମ କୀର୍ତନ ନ କରେ, ସେହି ଦୁର୍ମତି ମୋକ୍ଷର ନିଶୁଣି ପାଇ ମଧ୍ୟ ତା ଉପରେ ଚଢ଼ିବାରୁ ବଂଚିତ ରହି ଯାଏ ।

କିଛି ଲୋକ କହି ଥାଆନ୍ତି ଯେ - ଆମକୁ ବଡ଼ପାଟିରେ ଭଗବନ୍ନାମ ନେବାକୁ ସଂକୋଚ ଲାଗୁଛି । ମୁଁ ଏପରି ବହୁତ ଭଲ ଭଲ ଲୋକଙ୍କୁ ଦେଖିଛି- ଯେଉଁମାନଙ୍କୁ ପାଞ୍ଚଜଣଙ୍କ ଆଗରେ, ବା ରାସ୍ତାରେ ହରିନାମ ଉଚ୍ଚାରଣ କରିବାକୁ ଲଜ୍ଜା ଆସେ । ମିଛ କହିବାରେ, କଠୋର ବାଣୀ-ପ୍ରୟୋଗରେ, ପରନିନ୍ଦା-ପରଚର୍ଚ୍ଚାରେ, ଅନାଗ୍ଭର-ବ୍ୟଭିଗ୍ଭର କଥା କହିବାରେ ଲଜ୍ଜା ଆସେ ନାହିଁ । ଏହା ବଡ଼ ହିଁ ଦୁର୍ଭାଗ୍ୟ ଅଟେ । ଯଦି ଭଗବନ୍ନାମ ଦ୍ୱାରା ସଭ୍ୟତାରେ ଆଞ୍ଚ ଲାଗୁଛି, ତାହେଲେ ଏପରି ବିଷମୟୀ ଶୁଷ୍କ ସଭ୍ୟତାକୁ ଦୂରରୁ ନମସ୍କାର କରିବା ଉଚିତ । ସେ ହିଁ ଧନ୍ୟ, ଯାହାର ଭଗବନ୍ନାମକୀର୍ତନମାତ୍ରକେ, ଶ୍ରବଣ ଓ ସ୍ମରଣମାତ୍ରକେ ରୋମାଞ୍ଚ ଜାତ ହୁଏ । ଆଖିରେ ଲୁହ ପୂରି ଆସେ, କଣ୍ଠ ରୁଦ୍ଧ ହୋଇଯାଏ । ପ୍ରକୃତ ପକ୍ଷେ ସେହି ପୁରୁଷ ମନୁଷ୍ୟ ନାମକୁ ଯୋଗ୍ୟ ଅଟେ । ଏପରି ପୁରୁଷ ହିଁ ଦୁନିଆକୁ

ପବିତ୍ର କରନ୍ତି । ଭଗବାନ୍ କହୁଛନ୍ତି -

**ବାଗ୍ ଗଦ୍ଗଦା ଦ୍ରବତେ ଯସ୍ୟ ଚିତ୍ତଂ**
**ରୁଦତ୍ୟଭୀକ୍ଷ୍ଣଂ ହସତି କ୍ବଚିଚ୍ଚ ।**
**ବିଲଜ୍ଜ ଉଦ୍ଗାୟତି ନୃତ୍ୟତେ ଚ**
**ମଦ୍ଭକ୍ତିଯୁକ୍ତୋ ଭୁବନଂ ପୁନାତି ॥**

(ଶ୍ରୀମଭା. ୧୧/୧୪/୨୪)

'ଯାହାର ବାଣୀ ଗଦ୍‌ଗଦ ହୋଇଯାଏ, ହୃଦୟ ଦ୍ରବିତ ହୋଇଯାଏ, ଯିଏ ବାରମ୍ବାର ଉଚ୍ଚ ସ୍ୱରରେ ନାମ ନେଇ-ନେଇ ମୋତେ ଡାକେ,କେବେ କାନ୍ଦେ, କେବେ ହସେ, ଆଉ କେବେ ଲଜ୍ଜା ଛାଡ଼ି ନାଚେ ଏବଂ ଉଚ୍ଚ ସ୍ୱରରେ ମୋର ଗୁଣଗାନ କରେ, ଏପରି ଭକ୍ତିମାନ୍ ପୁରୁଷ ନିଜକୁ ଯେ ପବିତ୍ର କରେ,ଏଥିରେ ଆଉ କଥା କ'ଣ ଅଛି ? କିନ୍ତୁ ସେ ନିଜ ଦର୍ଶନ ଓ ଭାଷଣାଦିଦ୍ୱାରା ଜଗତକୁ ପବିତ୍ର କରିଦିଏ ।'

ଏହି କାରଣରୁ ହିଁ କୀର୍ତନପରାୟଣ ଭକ୍ତରାଜ ନାରଦ ଓ ଶ୍ରୀ ଗୌରାଙ୍ଗଦେବ ଆଦିଙ୍କ ଦର୍ଶନ ଓ ଭାଷଣ ଆଦି ଦ୍ୱାରା ହିଁ ଅନେକ ଜୀବଙ୍କର ଉଦ୍ଧାର ହୋଇଗଲା ।

ମହାପ୍ରଭୁଙ୍କ କୀର୍ତ୍ତନ ଶୁଣି ବଣରେ ରହୁଥିବା ଭୀଷଣ ସିଂହ, ଭାଲୁ ଆଦି ହିଂସ୍ର ପଶୁ ମଧ୍ୟ ପ୍ରେମରେ ନିମଗ୍ନ ହୋଇ ନାମ-କୀର୍ତନ କରି-କରି ନାଚିବାକୁ ଲାଗୁଥିଲେ । ଭଗବାନ୍ କହୁଛନ୍ତି-ହେ ଅର୍ଜୁନ !

**ଗୀତ୍ୱା ତୁ ମମ ନାମାନି ନର୍ତୟେନ୍ମମ ସନ୍ନିଧୌ ।**
**ଇଦଂ ବ୍ରବୀମି ତେ ସତ୍ୟଂ କ୍ରୀତୋଽହଂ ତେନ ଗ୍ୱର୍ଜୁନ ॥**

'ଯିଏ ମୋର ନାମଙ୍କୁ ଗାନ କରି କରି ମୋତେ ନିଜର ନିକଟରେ ମଣି ମୋ ଆଗରେ ନାଚେ, ମୁଁ ସତ କହୁଛି ଯେ- ମୁଁ ତା ଦ୍ୱାରା କିଣା ହୋଇଯାଏ ।'

କୀର୍ତନର ମହିମା କ'ଣ କୁହାଯିବ ? ଯେ କେବେ କୀର୍ତନ କରେ, ସେଇ ଭାଗ୍ୟବାନ୍‌କୁ ହିଁ ଏହାର ଆନନ୍ଦ ବିଷୟ ଜଣାଥାଏ । ଯାହାକୁ ଏହି ଆନନ୍ଦ ପାଇବାର ଥିବ, ସେ ନିଜେ କରି ଦେଖି ନେଉ । ବାଣୀ ଏହି ଆନନ୍ଦର ରୂପକୁ ବର୍ଣ୍ଣନା କରିପାରେ ନାହିଁ, କାରଣ ଏହା **'ମୂକାସ୍ୱାଦନବତ୍'** (ନାରଦ -ଭକ୍ତି.୫୨) ମୂକର ଗୁଡ଼-ସ୍ୱାଦ ସମାନ କେବଳ ଅନୁଭବର ବସ୍ତୁ ଅଟେ ।

ଏପର୍ଯ୍ୟନ୍ତ ବହୁତ ସଂକ୍ଷେପରେ ନାମ, ଜପ, ସ୍ମରଣ ଓ କୀର୍ତନ ସମ୍ବନ୍ଧୀ କିଛି କଥା କୁହାଗଲା । ସାଧକଙ୍କ ସୁବିଧାପାଇଁ ଏହି ଭେଦ-କଳ୍ପନା ହୁଏ । ତା ନ ହେଲେ ଜପ, ସ୍ମରଣ ବା କୀର୍ତନ ସବୁ ଗୋଟିଏ ହିଁ ବସ୍ତୁ ।

ଶ୍ରୀ ଭଗବାନଙ୍କ ପରମ ପବିତ୍ର ନାମକୁ କୌଣସି ପ୍ରକାରେ ଗ୍ରହଣ କରାଯାଉ, ତାହା ପରମ କଲ୍ୟାଣକାରୀ । ନାମର ପ୍ରତାପରେ ହିଁ ପ୍ରହ୍ଲାଦଜଡ଼ ମଧ୍ୟରୁ ଚେତନରୂପ ହୋଇ ଭଗବାନଙ୍କୁ ଅବତାର ନେବା ପାଇଁ ବାଧ୍ୟ କରିଦେଲା । ନାମର ପ୍ରତାପରୁ ହିଁ ସେ ଅଗ୍ନି, ସାପ ଆଦିଙ୍କ ଠାରୁ ରକ୍ଷା ପାଇଗଲା, ବିଷ ପିଇ ମଧ୍ୟ ମଲାନାହିଁ । ନାମର ପ୍ରତାପରୁ ହିଁ ମୀରାଙ୍କ ପାଇଁ ଜହର ହରିଚରଣାମୃତ ହୋଇଗଲା । ନାମର ପ୍ରତାପରୁ ହିଁ ନାରଦ,ବ୍ୟାସ,ଶୁକଦେବାଦି ଜଗତ୍-ପୂଜ୍ୟ ଅଟନ୍ତି । ନାମର ହିଁ ପ୍ରତାପରୁ ବ୍ରହ୍ମା ସୃଷ୍ଟିରଚନାରେ ସମର୍ଥ ହେଲେ । ନାମର ପ୍ରତାପରେ ପାଣି ଉପରେ ପଥର ଭାସିଲା, ନାମର ପ୍ରତାପରେ ହିଁ ହନୁମାନ ସ୍ତ୍ରିଶହ ଯୋଜନର ସାଗର ଅଳ୍ପ ଆୟାସରେ ଲଙ୍ଘନ କରିଗଲେ । ନାମର ହିଁ ପ୍ରତାପରେ ଶ୍ରୀ ଶଙ୍କର, ରାମାନୁଜ, ବଲ୍ଲଭ, ମଧ୍ୱ, ନିମ୍ବାର୍କ, ଚୈତନ୍ୟ ଆଦି ଆଚାର୍ଯ୍ୟମାନେ ଭଗବଦ୍‌ଭାବ ଲାଭ କଲେ ଓ ତାହାରି ପ୍ରତାପରେ ଆଜି ସେମାନଙ୍କର ଶିଷ୍ୟ ଓ ବଂଶଜମାନେ ପୂଜିତ ହେଉଅଛନ୍ତି । ନାମର ମହିମା କେତେ ଦୂର ଆଉ କୁହାଯିବ ! ଶେଷ, ମହେଶ, ଗଣେଶ, ଶାରଦା ମଧ୍ୟ ଯାହାର ବର୍ଣ୍ଣନା କରି ପାରନ୍ତି ନାହିଁ, ତାହାର ବର୍ଣ୍ଣନା ମୁଁ କ୍ଷୁଦ୍ରମତି କ'ଣ କରିବି ? ଯିଏ ଥରକପାଇଁ ନାମମଜା ଚାଖିନିଏ, ସିଏ ପାଗଳ ହୋଇଯାଏ, ତାର ସମସ୍ତ ପାପ-ତାପ ନଷ୍ଟ ହୋଇ ଯାଏ । ସେ ନିଜେ ମୁକ୍ତ ହୋଇ ଅନ୍ୟମାନଙ୍କ ପାଇଁ ମୁକ୍ତିର ମାର୍ଗ ପ୍ରଶସ୍ତ କରିଦିଏ । ସନ୍ଥମାନେ ଏହାରି ବଳରେ ଜନତାକୁ ମୁକ୍ତିର ପଥ ବତାଇବାରେ ସଫଳତା ଲାଭ କରିଥିଲେ । ନାମ ହିଁ ଜୀବନ, ନାମ ହିଁ ଧନ, ନାମ ହିଁ ପରିବାର, ନାମ ହିଁ ଇଜ୍ଜତ, ନାମ ହିଁ କୀର୍ତି, ନାମ ହିଁ ସ୍ୱର୍ଗ ଏବଂ ନାମ ହିଁ ଅମୃତ ।

**ନ ନାମସଦୃଶଂ ଜ୍ଞାନଂ ନ ନାମସଦୃଶଂ ବ୍ରତମ୍ ।**
**ନ ନାମସଦୃଶଂ ଧ୍ୟାନଂ ନ ନାମସଦୃଶଂ ଫଳମ୍ ॥**

****************************************************

ନ ନାମସଦୃଶସ୍ତ୍ୟାଗୋ ନ ନାମସଦୃଶଃ ଶମଃ ।
ନ ନାମସଦୃଶଂ ପୁଣ୍ୟଂ ନ ନାମସଦୃଶୀ ଗତିଃ ॥
ନାମୈବ ପରମା ମୁକ୍ତିର୍ନାମୈବ ପରମା ଗତିଃ ।
ନାମୈବ ପରମା ଶାନ୍ତିର୍ନାମୈବ ପରମା ସ୍ଥିତିଃ ॥
ନାମୈବ ପରମା ଭକ୍ତିର୍ନାମୈବ ପରମା ମତିଃ ।
ନାମୈବ ପରମା ପ୍ରୀତିର୍ନାମୈବ ପରମା ସ୍ମୃତିଃ ॥
ନାମୈବ କାରଣଂ ଜନ୍ତୋର୍ନାମୈବ ପ୍ରଭୁରେବ ଚ ।
ନାମୈବ ପରମାରାଧ୍ୟୋ ନାମୈବ ପରମୋ ଗୁରୁଃ ॥

'ନାମର ସମାନ ନା ଜ୍ଞାନ, ନା ବ୍ରତ, ନା ଧ୍ୟାନ, ନା ଫଳ, ନା ଦାନ, ନା ଶମ, ନା ପୁଣ୍ୟ ଏବଂ ନା କୌଣସି ଆଶ୍ରୟ ଅଛି । ନାମ ହିଁ ପରମ ମୁକ୍ତି, ନାମ ହିଁ ପରମ ଗତି, ନାମ ହିଁ ପରମ ଶାନ୍ତି, ନାମ ହିଁ ପରମ ନିଷ୍ଠା, ନାମ ହିଁ ପରମ ଭକ୍ତି, ନାମ ହିଁ ପରମ ବୁଦ୍ଧି, ନାମ ହିଁ ପରମ ପ୍ରୀତି, ନାମ ହିଁ ପରମ ସ୍ମୃତି, ନାମ ହିଁ ଜୀବର କାରଣ, ନାମ ହିଁ ପ୍ରଭୁ, ନାମ ହିଁ ଆରାଧ୍ୟ ଓ ନାମ ହିଁ ପରମ ଗୁରୁ ।' ଭଗବାନ୍ କହୁଛନ୍ତି, ହେ ଅର୍ଜୁନ -

ନାମଯୁକ୍ତାଞ୍ଜନାନ୍ ଦୃଷ୍ଟ୍ୱା ସ୍ନିଗ୍ଧୋ ଭବତି ଯୋ ନରଃ ।
ସ ଯାତି ପରମଂ ସ୍ଥାନଂ ବିଷ୍ଣୁନା ସହ ମୋଦତେ ॥
ତସ୍ମାନ୍ନାମାନି କୌନ୍ତେୟ ଭଜସ୍ୱ ଦୃଢ଼ମାନସଃ ।
ନାମଯୁକ୍ତଃ ପ୍ରିୟୋଽସ୍ମାକଂ ନାମଯୁକ୍ତୋ ଭବାର୍ଜୁନ ॥

'ନାମଯୁକ୍ତ ପୁରୁଷମାନଙ୍କୁ ଦେଖି ଯେଉଁ ମନୁଷ୍ୟ ପ୍ରସନ୍ନ ହୁଏ, ସେ ପରମଧାମକୁ ପ୍ରାପ୍ତ ହୋଇ ମଦ୍ରୂପ ବିଷ୍ଣୁଙ୍କ ସହ ଆନନ୍ଦ କରେ । ଅତଏବ ହେ କୌନ୍ତେୟ ! ଦୃଢ଼ ଚିତ୍ତରେ ନାମ-ଭଜନ କର । ନାମଯୁକ୍ତ ବ୍ୟକ୍ତି ମୋତେ ବଡ଼ ପ୍ରିୟ ଅଟେ । ହେ ଅର୍ଜୁନ ! ତୁମେ ନାମଯୁକ୍ତ ହୁଅ ।

ଯଦି ଭାରତୀୟ ହିନ୍ଦୁ-ଜାତିରେ କେବେ ଏକତା ହୋଇପାରେ, ଯଦି ଦୁନିଆର ସମସ୍ତ ଆସ୍ତିକ-ସମାଜ କେବେ ପ୍ରେମର ଏକସୂତ୍ରରେ ବାନ୍ଧି ହୋଇପାରେ, ଯଦି କେବେ ଜଗତରେ ବିଶ୍ୱପ୍ରେମର ପୂର୍ଣ୍ଣ ପ୍ରସାର ହୋଇପାରେ, ତାହେଲେ ମୋ ବୁଝିବାରେ ତାହା ଭଗବନ୍ନାମ ଦ୍ୱାରା ହିଁ ସମ୍ଭବ ଅଟେ । ଆଜି ଭଗବାନ୍‌ଙ୍କୁ ଭୁଲି ଲୋକେ କାର୍ଯ୍ୟ କରୁଛନ୍ତି । ଏଣୁ

ତାଙ୍କୁ ସଫଳତା ମିଳୁନାହିଁ । ମୁଁ ତ ସମସ୍ତଙ୍କୁ ଏହା ହିଁ ପ୍ରାର୍ଥନା କରୁଛି କି ସମସ୍ତେ ବୈର-ବିରୋଧ, ହିଂସା-ମତ୍ସର, କାମ-କ୍ରୋଧ, ଅସତ୍ୟ ଓ ସ୍ତେୟକୁ ଯଥାସାଧ୍ୟ ପରିତ୍ୟାଗ କରି ଶ୍ରୀଭଗବନ୍ନାମ ସାଧନରେ ଲାଗି ଯାଆନ୍ତୁ । ମୋ ବୁଝିବାରେ ଏହାରିଦ୍ୱାରା ଲୌକିକ ଓ ପାରଲୌକିକ ଦୁଇପ୍ରକାର ସିଦ୍ଧି ପ୍ରାପ୍ତ ହୋଇ ପାରେ । (୧) ନାମପ୍ରେମୀମାନଙ୍କ ସଙ୍ଗ, (୨) ପ୍ରତିଦିନ ନାମ ଜପର କିଛି ନିୟମ, (୩) ଭୋଗସମୂହରେ ବୈରାଗ୍ୟଭାବନା ଓ (୪) ସନ୍ତମାନଙ୍କ ଜୀବନଚରିତ୍ରର ଅଧ୍ୟୟନ - ଏଗୁଡ଼ିକ ନାମ-ସାଧନରେ ବଡ଼ ସହାୟକ ହୁଅନ୍ତି । ଏହି ଚାରିଟିର ସହାୟତାଦ୍ୱାରା ନାମ-ସାଧନରେ ସମସ୍ତେ ଲାଗିଯିବା ଉଚିତ । ମୋର ତ ଦୃଢ଼ ବିଶ୍ୱାସ ଯେ ନାମ ଦ୍ୱାରା ଅସମ୍ଭବ ମଧ୍ୟ ସମ୍ଭବ ହୋଇ ପାରେ ଏବଂ ଏହାର ସାଧନରେ କାହାରି ପାଇଁ କୌଣସି ପ୍ରତିବନ୍ଧ ନାହିଁ । ଉଚ୍ଚ ବର୍ଣ୍ଣର ହେଉ, ନୀଚ ବର୍ଣ୍ଣର ହେଉ, ପଣ୍ଡିତ ହେଉ ବା ମୂର୍ଖ ହେଉ, ସମସ୍ତେ ଏହାର ଅଧିକାରୀ ଅଟନ୍ତି; ବରଂ ଉଚ୍ଚ ସେଇ, ବଡ଼ ସେଇ, ଯିଏ ଭଗବନ୍ନାମପରାୟଣ, ଯାହାର ମୁଖରୁ ଓ ମନରୁ ନିରନ୍ତର ବିଶୁଦ୍ଧ ପ୍ରେମପୂର୍ବକ ଶ୍ରୀଭଗବନ୍ନାମର ଧ୍ୱନି ବାହାରୁ ଥାଏ ।

ଗୋସାଇଁ ମହାରାଜ କହୁଛନ୍ତି -

**ଧନ୍ୟ ଧନ୍ୟ ମାତା ପିତା, ଧନ୍ୟ ପୁତ୍ରୱର ସୋଇ ।**
**ତୁଲସୀ ଜୋ ରାମହି ଭଜେଂ, ଜୈସେହୁ କୈସେହୁ ହୋଇ ॥**
**ତୁଲସୀ ଜାକେ ବଦନତେଂ, ଧୋଖେହୁ ନିକସତ ରାମ ।**
**ତାକେ ପଗକୀ ପଗତରୀ, ମୋରେ ତନୁକୋ ଚାମ ॥**
**ତୁଲସୀ ଭକ୍ତ ଶ୍ୱପଚ ଭଲୋ, ଭଜୈ ରୈନ ଦିନ ରାମ ।**
**ଊଁଚୋ କୁଲ କେହି କାମକୋ, ଜହାଁ ନ ହରି କୋ ନାମ ॥**
**ଅତି ଊଁଚେ ଭୂଧରନପର, ଭୁଜଗନକେ ଅସ୍ଥାନ ।**
**ତୁଲସୀ ଅତି ନୀଚେ ସୁଖଦ, ଊଖ ଅନ୍ନ ଅରୁ ପାନ ॥**

ସମସ୍ତେ ମିଶିକରି ବୋଲ ଶ୍ରୀଭଗବନ୍ନାମର ଜୟ !



ସାଧନ ନାମ-ସମ ନହିଁ ଆନ ।

ଜପତ ସିଦ୍ଧ-ସନକାଦି, ସାରଦ-ନାରଦାଦି ସୁଜାନ ॥
ନାମକେ ବଲ ମିଟତ ଭୀଷନ, ଅସୁଭ ଭାଗ୍ୟ-ବିଧାନ ।
ନାମ-ବଲ ମାନଓ୍ୱ ଲହତ ସୁଖ ସହଜ ମନ-ଅନୁମାନ ॥
ନାମ ଟେରତ ଟରତ ଦାରୁନ ବିପତି ସୋକ ମହାନ ।
ଆର୍ତ୍ତକରି, ନର-ନାରି, ଧ୍ରୁଓ୍ୱ ସବ ରହେ ସୁଚି ସହିଦାନ ॥
ନାମକେ ପରତାପତେଁ ଜଲପର ତରେ ପାଷାନ ।
ନାମ-ବଲ ସାଗର ଉଲାଁଘ୍ୟୋ ସହଜ ହୀ ହନୁମାନ ॥
ନାମ-ବଲ ସଂଭଓ୍ୱ ସକଲ ଜେ କଛୁ ଅସଂଭଓ୍ୱ ଜାନ ॥
ଧନ୍ୟ ତେ ନର ରହତ ଜିନକେ ନାମ ରଟକୀ ବାନ ॥
ପାପ-ପୁଂଜ ପ୍ରଜାରିବେ ହିତ ପ୍ରବଲ ପାଓ୍ୱକ-ଖାନ ।
ହୋତ ଛିନମେଂ ଛାର, ନିକସତ ନାମ ଜାନ-ଅଜାନ ॥
ନାମ-ସୁରସରିମେଂ ନିରନ୍ତର କରତ ଜେ ଜନ ହ୍ନାନ ।
ମିଟତ ତୀନୋଂ ତାପ, ମୁଖ ନହିଁ ହୋତ କବହୁଁ ମଲାନ ॥
ନାମ ଆଶ୍ରିତ ଜନନକେ ମନ ବସତ ନିତ ଭଗଓ୍ୱାନ ।
ଜରତ ଖରତ କୁବାସନା ସବ ତୁରତ ଲଜ୍ଜା-ମାନ ॥
ନାମ ଜୀଓ୍ୱନ, ନାମ ଅମରିତ, ନାମ ସୁଖକୋ ଥାନ ।
ନାମ-ରତ ଜେ ନାମପର, ତେ ପୁରୁଷ ଅତି ମତିମାନ ॥
ନାମ ନିତ ଆନଂଦ-ନିରଝର, ଅତି ପୁନୀତ ପୁରାନ ।
ମୁକ୍ତ ସତ୍ୱର ହୋତ ଜେ ଜନ କରତ ସାଦର ପାନ ॥
ନାମ ଜପତ ସୁସିଦ୍ଧ ଜୋଗୀ ବନତ ସମରଥଓ୍ୱାନ ।
ନାମତେଂ ଉପଜତ ସୁଭଗତି, ବିରାଗ ସୁଭ ବଲଓ୍ୱାନ ॥
ନାମକେ ପରତାପ ଦୀଖତ ପ୍ରକୃତି-ଦୀପ ବୁଝାନ ।
ନାମ-ବଲ ଉଗତ ପ୍ରଭାମୟ ଭାନୁ ତଓ୍ୱ-ଜ୍ଞାନ ॥
ନାମକୀ ମହିମା ଅମିତ, କୋ ସକୈ କରି ଗୁନଗାନ ।
ରାମତେଂ ବଡ଼ ନାମ, ଜେହି ବଲ ବିକତ ଶ୍ରୀଭଗଓ୍ୱାନ ॥